# ଭାରତୀୟ କମ୍ୟୁନିଷ୍ଟ ପାର୍ଟିର
# ନିର୍ବାଚନ ଇସ୍ତାହାର



ପ୍ରକାଶକ
ଉତ୍କଳ ପ୍ରାଦେଶିକ କମ୍ୟୁନିଷ୍ଟ ପାର୍ଟି
କଟକ

# ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନିର୍ବାଚନ ଇସ୍ତାହାର

## ୧—କଂଗ୍ରେସର କ୍ରିୟାକଳାପ

ଦେଶ ସ୍ୱାଧୀନ ହେବାପରେ ଦଶବର୍ଷ ବିତିଗଲାଣି । ଜାତୀୟ ଆନ୍ଦୋଳନର ଯେଉଁ ମହତ୍ ଲକ୍ଷ୍ୟ ଗୁଡ଼ିକ ଥିଲା, ସେହି ଲକ୍ଷ୍ୟ ସବୁ ହାସଲ କରିବା ପାଇଁ ଆମର ଲୋକେ ଅବିରାମ ସଂଗ୍ରାମ କରି ଆସିଛନ୍ତି ।

ସେମାନେ ଦିନେ ଜାଣିଥିଲେ ଯେ ବ୍ରିଟିଶକୁ ହଟାଇବା ସେତେବେଳେ ଦେଶ ପାଇଁ ସବୁଠାରୁ ମୁଖ୍ୟ ଓ ଜରୁରୀ କର୍ତ୍ତବ୍ୟ ଥିଲା । ସେମାନେ ମଧ୍ୟ ବୁଝିଥିଲେ ଯେ ସେତିକରେ କର୍ତ୍ତବ୍ୟ ପୂରି ହୁଅନ୍ତା ନାହିଁ ।

ରାଜନୈତିକ ସ୍ୱାଧୀନତା ବଳରେ ସାମାଜିକ ଓ ଅର୍ଥନୈତିକ ଉନ୍ନତି ସାଧିତ ହୁଏ । ଦେଶର ସାଂସ୍କୃତିକ ବିକାଶ ଘଟେ । ଏଣୁ ରାଜନୈତିକ ସ୍ୱାଧୀନତା ଗୋଟିଏ ହତିଆର ବା ଉପାୟ । ଦେଶକୁ ନୂଆ ରୂପରେ ସଂଗଠିତ କରି ନୂଆ ଜୀବନ ଦେବାକୁ ହେଲେ ଓ ଦେଶରେ ସର୍ବାଙ୍ଗୀନ ଉନ୍ନତି ଆଣିବାକୁ ହେଲେ ରାଜନୈତିକ ସ୍ୱାଧୀନତାକୁ ହତିଆର ଭାବରେ ପ୍ରୟୋଗ କରିବାକୁ ହେବ ।

ଏବର ସରକାର ଜନସାଧାରଣଙ୍କ ଗୌରବପୂର୍ଣ୍ଣ ସଂଗ୍ରାମ ହେତୁରୁ ହିଁ କ୍ଷମତାର ଗୃହ ପାଇଛି । ଏବଂ ଏହା ଦେଶର ମୌଳିକ ଉନ୍ନତି ଆଣିବ ବୋଲି ପ୍ରତିଶ୍ରୁତି ଦେଇଥିଲା । ତେଣୁ ଲୋକେ ଆଶା କରିଥିଲେ, ଦେଶକୁ ସଂଗଠନ ଦିଗରେ ଏହା ଦେଶବାସୀଙ୍କୁ ନିର୍ଭୁଲ ନେତୃତ୍ୱ ଦେବ ।

## ନିଜର ପ୍ରତିଶ୍ରୁତି ଓ ଶପଥପ୍ରତି ବିଶ୍ୱାସଘାତକତା

କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ ବର୍ଷଗୁଡ଼ିକର ଅଭିଜ୍ଞତା ସେମାନଙ୍କର ଏ ଆଶାକୁ ଧୂଳିସାତ୍ କରିଦେଇଛି ।

ଏବେ ମଧ୍ୟ ଭାରତ ବ୍ରିଟିଶ ରାଜ୍ୟଗୋଷ୍ଠୀର ସଭ୍ୟ ହୋଇ ରହିଛି । ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ ସରକାର ଆମେରିକା ନେତୃତ୍ୱରେ ପରିଚାଳିତ ଯୁଦ୍ଧଗୋଷ୍ଠୀ ଓ ଯୁଦ୍ଧ ପ୍ରଚେଷ୍ଟାରୁ ଅନେକାଂଶରେ ନିଜକୁ ଅଲଗା ରଖିଥିଲେ ସତ, ତଥାପି ତାଙ୍କର ବୈଦେଶିକ ନୀତି ବିଲାତ୍ ସାମ୍ରାଜ୍ୟବାଦ ଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହେଉଥିଲା । ସରକାରର ବହୁ ଘୋଷଣା ଓ କାର୍ଯ୍ୟରୁ ଏହା ଜଣାଯାଏ ।

ଆମର ଅର୍ଥନୀତି ଉପରେ ବିଲାତ ପୁଂଜିର କର୍ତ୍ତୃତ୍ୱ ପୂରା ପୂରି ରହିଲା, ଯଦିଓ ବିଲାତ ଓ ଆମେରିକା ଠାରୁ କାରଖାନା ଯନ୍ତ୍ରପାତି ବିଷୟରେ କୌଣସି ସାହାଯ୍ୟ ମିଳିଲା ନାହିଁ । ତଥାପି ଏ ସବୁ ଦେଶର ପୁଂଜିପତି ମାନଙ୍କୁ ସବୁ ପ୍ରକାର ସୁବିଧା ସୁଯୋଗ ଦିଆଗଲା । ଏଣେ ସମାଜ ବାଦୀରାଷ୍ଟ୍ର ଗୁଡ଼ିକ ସହ ଅର୍ଥନୈତିକ ସଂପର୍କ ପ୍ରତିଷ୍ଠା ପାଇଁ ବିଭିନ୍ନ ଉଦ୍ୟମ ମଧ୍ୟ ଚାଲିଥିଲା ।

ଗଡ଼ଜାତ ଶାସନ ଲୋପ କରିବାକୁ ଓ ଭାଷାଭିତ୍ତିରେ ପ୍ରଦେଶ ଗଠନ କରିବାକୁ ଜନସାଧାରଣଙ୍କ ଦାବୀକୁ ଠିକ୍ ଭାବରେ କାର୍ଯ୍ୟ-

କାରୀ କରାଗଲା ନାହିଁ । କୃଷି ସଂସ୍କାର ସଂପର୍କରେ ଏକ ଅଧା-ପନ୍ତରିଆ ନୀତି ନିଆଗଲା । ଯାହା ଫଳରେ ଜମିଦାର ମାନଙ୍କ ହାତରେ ନିଜ ଚାଷ ବାବଦକୁ ବହୁ ପରିମାଣରେ ଜମି ଛାଡ଼ ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ମୋଟା କ୍ଷତିପୂରଣ ମଧ୍ୟ ଦିଆଗଲା । ଏଣେ କିନ୍ତୁ ଖଜଣା ଟିକସ ଓ ଋଣଭାରରେ ଚାଷୀ ଆହୁରି ତଳ ତଳାନ୍ତ ହେବାକୁ ଲାଗିଲା । ସାରା ଦେଶବ୍ୟାପୀ ଚାଷୀ ମାନଙ୍କୁ ବହୁ ସଂଖ୍ୟାରେ ଉଚ୍ଛେଦ କରାଗଲା । ଦେଶରେ ଖାଦ୍ୟ ଶସ୍ୟର ଅଭାବ ସାଂଘାତିକ ଆକାର ଧରିବା ଫଳରେ ଖାଦ୍ୟ ପାଇଁ ବାହାରୁ ଆମଦାନୀ ଉପରେ ବେଶି ବେଶି ନିର୍ଭର କରିବାକୁ ପଡ଼ିଲା । ଶିଳ୍ପ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି ନ ପାଇ ବରଂ ତାହା କେତେକ ସ୍ଥାନରେ ହ୍ରାସ ପାଇବାକୁ ଲାଗିଲା । ଜିନିଷ ପତ୍ରର ଦରଦାମ ହୁ ହୁ ବଢ଼ିବାକୁ ଲାଗିଲା । ଲାଞ୍ଚ, କଳାବଜାର, ଆଖିବୁଜା ମୁନାଫା, ଦୁର୍ନୀତି ଚୋରିଆଡ଼େ ବ୍ୟାପିଗଲା । ଏପରିକି ଅନେକ ସମୟରେ ଏହା ପଛରେ ବହୁ ପ୍ରାଦେଶିକ ସରକାରର ମନ୍ତ୍ରୀ ମାନଙ୍କ ହାତ ରହି ଥାଏ । ପୁଞ୍ଜିପତି ମାନେ ମୋଟା ଲାଭ କରିବା ସଂଗେ ସଂଗେ ଶ୍ରମିକ, ମଧ୍ୟବିତ୍ତ, କର୍ମଚାରୀ ଓ ଶିକ୍ଷକ ଆଦିଙ୍କ ସ୍ୱଳ୍ପ ଦରମା ସାଧାରଣ ଭାବରେ ଜୀବନ ନିର୍ବାହ କରିବାକୁ ମଧ୍ୟ ପୋଷାଇଲା ନାହିଁ । ଶିକ୍ଷାର ଖର୍ଚ୍ଚ ଯଥେଷ୍ଟ ବଢ଼ିଗଲା, ଲୋକମାନଙ୍କ ବାସଗୃହ ବା ସ୍ୱାସ୍ଥ୍ୟ ଆଦିର ଉନ୍ନତି ଦିଗରେ କୌଣସି ଦୃଷ୍ଟି ଦିଆଗଲା ନାହିଁ ।

ଏହିପରି ଭାବରେ ନିଜର ଶପଥ ଓ ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତି ସବୁକୁ ବେଖାତିର ଭାବରେ ଲଙ୍ଘନ କରାଗଲା । ସ୍ୱରାଜ ଆନ୍ଦୋଳନ ବେଳେ ଯେଉଁ ଗୌରବମୟ ଜାତୀୟ ଏକତା ଗଢ଼ିଉଠିଥିଲା ଓ ଯାହାକୁ ଦେଶ ନିର୍ମାଣ କାର୍ଯ୍ୟରେ ଆହୁରି ଅଧିକ

ଦୂର ଆଗେଇ ନେବା ପାଇଁ ଜନସାଧାରଣ ଚାହୁଁଥିଲେ ତାହାକୁ ଏହିପରି ଭାବରେ ଛିନ୍ନଛିନ୍ନ କରି ଦିଆଗଲା ।

ଜନସାଧାରଣଙ୍କ ଭିତରେ କ୍ରୋଧ ଓ ଅସନ୍ତୋଷ ପ୍ରବଳ ହେବା ସଙ୍ଗେ ସଙ୍ଗେ ସେମାନେ ନିଜର ଜୀବନ ଉପରେ ହେଉଥିବା ଏହି ଆକ୍ରମଣକୁ ସାମନା କରିବାକୁ ଆଗେଇ ଗଲେ । ନିଜର ଅଧିକାର ଓ ସ୍ୱାଧୀନତାକୁ ରକ୍ଷା କରିବାକୁ ସେମାନେ ତତ୍ପର ହୋଇ ଉଠିଲେ ।

ଫଳରେ ବ୍ରିଟିଶ ଅମଳରେ ଯେଉଁ ଦମନ ଓ ଅତ୍ୟାଚାରର ଯନ୍ତ୍ର ସଜଡ଼ା ହୋଇ ରହିଥିଲା, ତାହାକୁ ଆଶ୍ରୟ କରି ସରକାର ଲୋକଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଯେଉଁଠି ପ୍ରତିରୋଧ ବା ଆନ୍ଦୋଳନର ସାମାନ୍ୟ ଆଭାଷ ମିଳିଲା, ସେଠାରେ ଅତି ନିଷ୍ଠୁରତାର ସହ ସେଗୁଡ଼ିକ ଦବାଇ ଦେବାକୁ ଚେଷ୍ଟା କରାଗଲା । ଶ୍ରମଜୀବୀ ଜନତାର ବିଶ୍ୱସ୍ତ ଓ ଲଢ଼ୁଆ ବାହିନୀ ରୂପେ କମ୍ୟୁନିଷ୍ଟ ପାର୍ଟିକୁ ଏ ଆକ୍ରମଣର ପ୍ରଧାନ ଧକ୍କା ସହିବାକୁ ପଡ଼ିଲା । ୧୯୪୮ରୁ ଆରମ୍ଭ କରି ୩ ବର୍ଷ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବରେ କମ୍ୟୁନିଷ୍ଟ ପାର୍ଟି ଉପରେ ଜୁଲୁମ ଓ ଆକ୍ରମଣର ସୁଅ ଛୁଟିଲା । ଅନ୍ୟ ଯେଉଁମାନେ ମଧ୍ୟ ଜନତା ପାଖରେ ଠିଆ ହେଲେ, ସେମାନେ ମଧ୍ୟ ଏଥିରୁ ବାଦ ପଡ଼ିଲେ ନାହିଁ ।

ସରକାରୀ ହିସାବ ଅନୁସାରେ ସ୍ୱାଧୀନତାର ପ୍ରଥମ ୩ବର୍ଷ ଭିତରେ ପଚିଶ ହଜାର ରାଜନୈତିକ କର୍ମୀଙ୍କୁ ଜେଲ ଭୋଗିବାକୁ ପଡ଼ିଛି । ତେର ହଜାର ଲୋକଙ୍କୁ ହତ୍ୟା ଓ ଜଖମ କରା ହୋଇଛି ।

## ଗତ ନିର୍ବାଚନର ଶିକ୍ଷା

ଏହି ପ୍ରକାର ଏକ ବିଭତ୍ସ ଅବସ୍ଥା ଭିତରେ ପ୍ରଥମ ସାଧାରଣ ନିର୍ବାଚନ ଅଧିକାଂଶ ସ୍ଥାନରେ ଏକ ଜନ ଜାଗରଣର ରୂପ ନେବା

ଅନିବାର୍ଯ୍ୟ ହୋଇପଡ଼ିଲା । ଗଡ଼ଜାତ ଅଞ୍ଚଳରେ ଓ ବିଶେଷ କରି ଯେଉଁଠି ଲୋକମାନେ ଟାଣୁଆ ଲଢ଼େଇରେ ଆଗେଇ ଆସିଥିଲେ ଓ ସରକାରୀ ତରଫରୁ ଆଖିବୁଜା ଦମନ ଚାଲିଥିଲା, ସେସବୁ ସ୍ଥାନରେ ଗତ ନିର୍ବାଚନର ଏହିରୂପ ଆହୁରି ପ୍ରକଟ ହୋଇ ଉଠିଲା । ସରକାରର ନୀତି ଓ କାର୍ଯ୍ୟ ପନ୍ଥା ବିରୋଧରେ ଜନସାଧାରଣଙ୍କ ଭିତରେ କି ଗଭୀର ଅସନ୍ତୋଷ ରହିଥିଲା ତାହା ଗତ ନିର୍ବାଚନର ଫଳାଫଳ ଦେଖାଇ ଦେଇଛି । ଗତ ନିର୍ବାଚନରେ ଦିଆଯାଇଥିବା ଭୋଟର ଶତକଡ଼ା ୪୨ ଭାଗ ମାତ୍ର କଂଗ୍ରେସ ପାଇଲା । ଏଥିରୁ କଂଗ୍ରେସର ପୂର୍ବ ସମ୍ମାନ ଓ ଲୋକପ୍ରିୟତା କେତେ ତଳକୁ ଖସି ଯାଇଛି ତାହା ସହଜରେ ଅନୁମେୟ । କଂଗ୍ରେସର ବହୁସଂଖ୍ୟକ ବଡ଼ ବଡ଼ ନେତା ଓ ମନ୍ତ୍ରୀମାନେ ନିର୍ବାଚନରେ ହାରିବାକୁ ଲାଗିଲେ । ଜନ ସାଧାରଣଙ୍କ କଂଗ୍ରେସ ବିରୋଧୀ ମନୋଭାବରୁ ଫାଇଦା ଉଠାଇବାକୁ ଇଚ୍ଛାକରିଥିବା ପ୍ରତିକ୍ରିୟାଶୀଳ ସାମ୍ପ୍ରଦାୟିକ ଦଳମାନେ ମାତ୍ର ଶତକଡ଼ା ୫ ଭୋଟ ପାଇଲେ । ପ୍ରଗତିଶୀଳ କର୍ମ-ସୂଚୀ ଦେଇଥିବା ବିରୋଧୀ ଦଳର ପ୍ରାର୍ଥୀମାନେ ଶତକଡ଼ା ୨୫ଭୋଟ ପାଇଲେ । ଯେଉଁ କମ୍ୟୁନିଷ୍ଟ ପାର୍ଟିକୁ ସରକାର ପୂରାପୂରି ଲୋପ କରି ଦେବାକୁ ବସିଥିଲା ତାହା ଏକ ଶକ୍ତିଶାଳୀ ଦଳରୂପେ ମୁଣ୍ଡ ଟେକି ଉଠିଲା ।

ପ୍ରଥମ ସାଧାରଣ ନିର୍ବାଚନର କିଛିମାସ ଆଗରୁ କମ୍ୟୁନିଷ୍ଟ ପାର୍ଟି ଯେଉଁ ନିର୍ବାଚନ ଇସ୍ତାହାର ଦେଇଥିଲା ସେଥିରେ ସେ ଅନ୍ୟାନ୍ୟ ଗଣତାନ୍ତ୍ରିକଦଳଗୁଡ଼ିକୁ ପରସ୍ପରର ଆହୁରି ନିକଟବର୍ତ୍ତୀ ହୋଇ ମିଳିତ ଭାବେ କଂଗ୍ରେସର ବିରୋଧ କରିବାକୁ ଆବେଦନ କରିଥିଲା । ଏହି ଆବେଦନ ପ୍ରତି ଅନ୍ୟାନ୍ୟ ଦଳମାନେ କର୍ଣ୍ଣପାତ

କରିଥିଲେ ପ୍ରଗତିଶୀଳ ଶକ୍ତିର ବିଜୟ ନିଃସନ୍ଦେହ ଭାବରେ ଆହୁରି ଜାଜ୍ୱଲ୍ୟମାନ ହୋଇଥାଆନ୍ତା ।

ଆମ ଦେଶରେ ନିର୍ବାଚନର ଯେଉଁ ଅଗଣତାନ୍ତ୍ରିକ ପ୍ରଥା ରହିଛି ତା ଫଳରେ କଂଗ୍ରେସ ଶାସନ ଗାଦିରେ ରହିଲା । କଂଗ୍ରେସକୁ ଯେତିକ ଭୋଟ ମିଳିଥିଲା, ସେ ଅନୁପାତରେ ତାକୁ ଅନେକ ଅଧିକ ସ୍ଥାନ ମିଳିଲା । କିନ୍ତୁ ଦେଶର ରାଜନୈତିକ ଜୀବନରେ ତାର ଯେଉଁ ଏକଚ୍ଛତ୍ରିଆ ଆସନ ରହିଥିଲା ଅନେକ ଗୁଡ଼ିଏ ରାଜ୍ୟରେ ସେହି ମୂଳଦୁଆ ଦୋହଲି ଯାଇଛି । ଏହିପ୍ରକାର ଏକ ଅବସ୍ଥା ପ୍ରତି ଶାସକଗୋଷ୍ଠୀ ସମ୍ପୂର୍ଣ୍ଣ ଆଖି ବୁଜି ଦେବା ସମ୍ଭବ ନୁହେଁ ଏବଂ ପରବର୍ତ୍ତୀ ସମୟରେ ବିଭିନ୍ନ ମତ ନେଲାବେଳେ ଏହି କଥାକୁ ସେମାନେ ପାଶୋରି ଦେଇ ନ ଥିଲେ ।

## ଜନ ଆନ୍ଦୋଳନର ଅଗ୍ରଗତି

ପ୍ରଥମ ସାଧାରଣ ନିର୍ବାଚନର ପରବର୍ତ୍ତୀ ବର୍ଷଗୁଡିକ ଭିତରେ ଜନସାଧାରଣଙ୍କ ଆକାଙ୍କ୍ଷା ଓ ଉତ୍ସାହ ଆହୁରି ଆଗେଇ ଯାଇଛି । ବ୍ୟବସ୍ଥାସଭା ଭିତରେ ଓ ସାଧାରଣ ରାଜନୈତିକ ଜୀବନରେ ଗଣତାନ୍ତ୍ରିକ ଶକ୍ତିର ଅଭିବୃଦ୍ଧି ଏଥିପାଇଁ ଅନେକ ପରିମାଣରେ ସାହାଯ୍ୟକାରୀ ହୋଇଛି ।

ଜାତୀୟ ସ୍ୱାଧୀନତାକୁ ମଜଭୂତ କରିବା ପାଇଁ ଏସିଆର ସଂହତି ଓ ଶାନ୍ତିର ସୁରକ୍ଷା ପାଇଁ ଏବଂ ସମାଜବାଦୀ ଓ ଶାନ୍ତିକାମୀ ରାଷ୍ଟ୍ରଗୁଡ଼ିକ ସହ ଭ୍ରାତୃତ୍ୱପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠାପାଇଁ ଗଢ଼ି ଉଠୁଥିବା ଗଣ ଆନ୍ଦୋଳନ ଏକ ନୂତନ ରୂପ ଗ୍ରହଣ କରିଛି ।

ଆଜି ଶାନ୍ତି, ସ୍ୱାଧୀନତା ଓ ଗଣତନ୍ତ୍ରର ବିଶ୍ୱ ସାମ୍ମୁଖ୍ୟ ଆହୁରି ଆଗକୁ ମାଡ଼ି ଚାଲିଛି । ସମାଜବାଦୀ ଚିନ୍ତାଧାରା ପୃଥିବୀର

ଗୃହଆଡ଼େ ଖେଳଗଲଣି । ତାଙ୍କଠାରୁ ସ୍ୱାଧୀନତା ହାସଲ କରିବା ପାଇଁ ଏବଂ ତାହା ରକ୍ଷା କରିବା ପାଇଁ ଏସିଆ ଓ ଆଫ୍ରିକାର ଜନସାଧାରଣଙ୍କ ସଂଗ୍ରାମ ଦିନୁଦିନ ଅଧିକ ସଫଳତା ହାସଲ କରୁଛି ।

ଏହି ସବୁ ଦେଶଗୁଡ଼ିକୁ ସାମରିକ ଚୁକ୍ତିଭିତରକୁ ଟାଣି ନେବାର ସାମ୍ରାଜ୍ୟବାଦୀ ଚକ୍ରାନ୍ତ ବିରୋଧରେ ଓ ସମସ୍ତ ପ୍ରକାର ସାମରିକ ମେଣ୍ଟ ବିରୋଧରେ ଜନସାଧାରଣଙ୍କ ସଂଗ୍ରାମ ନୂଆ ନୂଆ ସଫଳତା ହାସଲ କରିଛି । ସାମ୍ରାଜ୍ୟବାଦୀମାନଙ୍କ ଯୁଦ୍ଧ ସଜବାଜ ଯେ ସବୁ ଦେଶର ସ୍ୱାଧୀନତାକୁ ବିଶେଷକରି ଏସିଆର ସ୍ୱାଧୀନତାକୁ ବିପନ୍ନ କରୁଛି, ଏ କଥା ସମସ୍ତଙ୍କ ଆଗରେ ପରିଷ୍କାର ହୋଇଗଲଣି । ନେହେରୁଙ୍କ ନେତୃତ୍ୱ ତଳେ ଆମ ଦେଶର ଶାସକ-ଗୋଷ୍ଠୀ ମଧ୍ୟ ଏ ବିପଦ ପ୍ରତି ସତର୍କ ହେବାକୁ ଆରମ୍ଭ କରିଛନ୍ତି । ଆମ ସ୍ୱାଧୀନତାକୁ ଏକ ଟାଣୁଆ ମୂଳଦୁଆ ଉପରେ ଛିଡ଼ା କରାଇବାକୁ ହେଲେ, ଆମ ଦେଶରେ ଶିଳ୍ପର ବିକାଶ ଓ ଉନ୍ନତି ହେଲା ସବୁଠାରୁ ଜରୁରୀ କଥା । ଦେଶବାସୀଙ୍କ ଆଗରେ ଏ କଥା ଆଜି ଅତି ପରିଷ୍କାର ହୋଇଯାଇଛି ।

ଏ ସବୁର ପ୍ରଭାବ ଫଳରେ ଭାରତ ସରକାରଙ୍କ ବୈଦେଶିକ ନୀତି ମୌଳିକ ଭାବେ ପରିବର୍ତ୍ତିତ ହୋଇଛି । ଭାରତ ସରକାର ଶାନ୍ତି ନୀତି ଉପରେ ଦୃଢ଼ ରହିଛନ୍ତି । ସାମ୍ରାଜ୍ୟବାଦୀଙ୍କ ଯୁଦ୍ଧ ସଜବାଜ ଓ ଏସିଆର ଦେଶଗୁଡ଼ିକୁ ଯୁଦ୍ଧ ମେଣ୍ଟ ଭିତରକୁ ଟାଣିନେବା ପାଇଁ ସାମ୍ରାଜ୍ୟବାଦୀଙ୍କ ସମସ୍ତ ଚେଷ୍ଟାକୁ ଭାରତ ସରକାର ବିରୋଧ କରିଛନ୍ତି । ସମସ୍ତ ପ୍ରକାର ଉପନିବେଶବାଦର ବିରୋଧ କରିବା ଦିଗରେ ଓ ଏସିଆର ଏକତା ଗଢ଼ି ତୋଳିବା ଦିଗରେ ଭାରତ ସରକାରଙ୍କ ବୈଦେଶିକ ନୀତି ପରିଚାଳିତ

ହୋଇଛି । ଚୀନର ଜନତନ୍ତ୍ର ସହ ମିଳିତଭାବେ ଐତିହାସିକ ପଞ୍ଚଶୀଳାର ଘୋଷଣା କରିବା ଫଳରେ ଓ ଶାନ୍ତିପ୍ରିୟ ସମାଜବାଦୀ ଏବଂ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରିବା ଫଳରେ ଭାରତର ଶାନ୍ତିନୀତି ଆହୁରି ଜନପ୍ରିୟ ହୋଇ ପାରିଛି । ଏ ସମସ୍ତ ନୀତି ଅନୁସରଣ କରିବା ଫଳରେ ଭାରତର ସମ୍ମାନ ଆଜି ବହୁଗୁଣରେ ବଢ଼ିଯାଇଛି ।

ଭାରତର ବୈଦେଶିକ ନୀତି ଆଜି ଯେଉଁ ଦିଗରେ ପରିବର୍ତ୍ତିତ ହେଉଛି, କମ୍ୟୁନିଷ୍ଟ ପାର୍ଟି ସେହି ନୀତି ଉପରେ ବରାବର ଜୋର ଦେଇ ଆସିଛି ଓ ଅନ୍ୟାନ୍ୟ ଦେଶପ୍ରେମୀ ଶକ୍ତି ସହିତ ଏକଜୁଟ ହୋଇ ବୈଦେଶିକ ନୀତିର ଏହି ଦିଗ ପାଇଁ କମ୍ୟୁନିଷ୍ଟ ପାର୍ଟି ବରାବର ଲଢ଼ିଆସିଛି ।

ପୃଥିବୀର ରାଜନୀତିରେ ଏହିପ୍ରକାର ଏକ ନୂତନ ଆସନ ଗ୍ରହଣ କରିବା ଫଳରେ ଆମର ଦେଶ ନିଜର ସ୍ୱାଧୀନତାକୁ ଓ ଜାତୀୟ ଅର୍ଥନୀତିକୁ ଦୃଢ଼ କରିବା ଦିଗରେ ଅନେକ କାର୍ଯ୍ୟକ୍ରମ ନେବାକୁ ସମର୍ଥ ହୋଇଛି । ଆମ ଦେଶର ଶିଳ୍ପର ବିକାଶ ପାଇଁ ଏହା ସମାଜବାଦୀ ରାଷ୍ଟ୍ରଗୁଡ଼ିକ ସହ ସମତାର ଭିତ୍ତି ଉପରେ ନୂତନ ସମ୍ପର୍କ ପ୍ରତିଷ୍ଠା କରିଛି । ପୁଞ୍ଜିବାଦୀ ଶକ୍ତିଗୁଡ଼ିକ ଉପରେ ଏହି ନୂତନ ନୀତିର ଯଥେଷ୍ଟ ପ୍ରଭାବ ପଡ଼ିଛି ।

ଜନସାଧାରଣଙ୍କ ପାଇଁ ଏହା ଏକ ଗଭୀର ଚିନ୍ତାର ବିଷୟ ଯେ ପ୍ରତିକ୍ରିୟାଶୀଳ ଦଳଗୁଡ଼ିକ ଏବଂ ସରକାରରେ ଥିବା କେତେକ ପ୍ରଭାବଶାଳୀ ଲୋକ ଭାରତର ଏହି ପ୍ରକାର ବୈଦେଶିକ ନୀତିରେ ସନ୍ତୁଷ୍ଟ ନ ହୋଇ ଏହାର ପରିବର୍ତ୍ତନ ଚାହୁଁଛନ୍ତି । କୁତ୍ସା ଓ ମିଥ୍ୟାର ଆଶ୍ରୟ ନେଇ ସୋଭିଏଟ, ଚୀନ ଓ ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ରଗୁଡ଼ିକ ସହ ଆମର ସମ୍ପର୍କକୁ ତିକ୍ତ କରିବାକୁ

ଏମାନେ ଲଗି ପଡ଼ିଛନ୍ତି । ସେମାନେ ଭୁଲି ଯାଉଛନ୍ତି ଯେ ଏହି ଦେଶଗୁଡ଼ିକ ସବୁବେଳେ ଶାନ୍ତି ଓ ସ୍ୱାଧୀନତା ପାଇଁ ଲଢ଼ି ଆସିଛନ୍ତି, ଆମ ଦେଶ ସହିତ ସେମାନଙ୍କର ବନ୍ଧୁତାକୁ କାର୍ଯ୍ୟରେ ପ୍ରମାଣିତ କରିଛନ୍ତି ଓ ନିକଟ ଅତୀତରେ ସଙ୍କଟ ବେଳାରେ ମିଶରକୁ ପୂର୍ଣ୍ଣ ସମର୍ଥନ ଦେଇଛନ୍ତି । ଏହି ପ୍ରତିକ୍ରିୟାଶୀଳ ଦଳମାନଙ୍କୁ ବିରୋଧ କରିବା ସଙ୍ଗେ ସଙ୍ଗେ ବିଚ୍ଛିନ୍ନ କରିଦେବାକୁ ପଡ଼ିବ ।

ଏହିସବୁ ସତ୍ତ୍ୱେ ଆମ ବୈଦେଶିକ ନୀତିରେ ଅନେକ ଦୁର୍ବଳତା ଓ ଦୋହଲଖଞ୍ଜଲ ଭାବ ତଥାପି ରହିଛି । ବିଲାତ ରାଜ୍ୟ ଗୋଷ୍ଠୀ ସହିତ ଆମର ସମ୍ପର୍କ ଏହାର ଏକ ପ୍ରଧାନ କାରଣ । ଏହାର ପରିଣାମ ସ୍ୱରୂପ ବିଲାତ ସରକାରଙ୍କୁ ମାଳୟ ପାଇଁ ଗୁର୍ଖା ସୈନ୍ୟ ସଂଗ୍ରହ ନିମନ୍ତେ କ୍ରମାଗତ ସୁବିଧା ଦିଆଯାଉଛି ଏବଂ ସାଇପ୍ରସ, କେନିଆ, ଆଦି ଉପନିବେଶଗୁଡ଼ିକ ଉପରେ ବ୍ରିଟିଶର ବର୍ବର ଦମନ ସମ୍ପର୍କରେ ଭାରତ ସରକାର ବରାବର ନୀରବ ରହିଛନ୍ତି । ଏପରିକି ମିଶର ବିରୁଦ୍ଧରେ ବ୍ରିଟେନର ଅମାନୁଷିକ ଆକ୍ରମଣ ପରେ ମଧ୍ୟ ଭାରତ ସରକାର ବିଲାତ ରାଜ୍ୟଗୋଷ୍ଠୀରୁ ବାହାରି ଆସିବାକୁ ପ୍ରସ୍ତୁତ ନୁହନ୍ତି । ଉତ୍ତର ଆଟଲାଣ୍ଟିକ ଚୁକ୍ତି, ଦକ୍ଷିଣପୂର୍ବ ଏସିଆ ଚୁକ୍ତି ଓ ବାଗଦାଦ ଚୁକ୍ତି ଆଦି ସାମରିକମେଣ୍ଟର ଅନ୍ୟତମ ସଙ୍ଗଠକ, ଭାଗୀଦାର ଓ ଅସଂଖ୍ୟ ଔପନିବେଶିକ ଜନତାର ଉତ୍ପୀଡ଼କ ବିଲାତ ଏହି ରାଜ୍ୟଗୋଷ୍ଠୀର ନେତା । ସାମ୍ରାଜ୍ୟବାଦ ଓ ସାମରିକ ମେଣ୍ଟକୁ ଆମର ପ୍ରତିରୋଧ ଏବଂ ଆମର ଶାନ୍ତି ନୀତି ସହିତ ଏହି ରାଜ୍ୟଗୋଷ୍ଠୀର ସଭ୍ୟପଦ ପୂର୍ଣ୍ଣରୂପେ ବିରୋଧାଚରଣ କରୁଛି । ଆଜି ମଧ୍ୟ ଆଜି ରାଜ୍ୟ-ଗୋଷ୍ଠୀରେ ସଭ୍ୟଥିବା ଦକ୍ଷିଣ ଆଫ୍ରିକା ଆଦି କେତେକ ରାଷ୍ଟ୍ରର ଭାରତୀୟମାନଙ୍କ ଉପରେ ଯେଉଁ ଅତ୍ୟାଚାର ଚାଲୁଛି, ସେ ଦୃଷ୍ଟିରୁ

ବିଗ୍ରହକଲେ ରାଜ୍ୟଗୋଷ୍ଠୀ ସଭ୍ୟପଦ ଆମ ଜାତୀୟ ସମ୍ମାନକୁ କ୍ଷୁଣ୍ଣ କରୁଛି ।

ଆଜିପର୍ଯ୍ୟନ୍ତ ମଧ୍ୟ ପର୍ତ୍ତୁଗୀଜ ସାମ୍ରାଜ୍ୟବାଦୀମାନେ ଭାରତର ଗୋଟିଏ ଅଂଚଳ ଦଖଲ କରି ରହିଛନ୍ତି ଓ ସେଠାକାର ଜନ-ସାଧାରଣଙ୍କ ଉପରେ ନାରକୀୟ ଦମନ ଚାଲିଛି । ଏହି ପ୍ରଶ୍ନ ଉପରେ ସରକାରଙ୍କ ଭୂମିକା ଦେଶ ଭିତରେ ଗଭୀର ଅସନ୍ତୋଷ ଓ କ୍ରୋଧ ଉଦ୍ରେକ କରିଛି । ଭାରତୀୟ ସତ୍ୟାଗ୍ରହୀମାନଙ୍କ ଉପରେ ପର୍ତ୍ତୁଗୀଜ୍-ମାନଙ୍କ ନିର୍ମମ ଦମନ ଓ ହତ୍ୟା ବିରୁଦ୍ଧରେ ସାରା ଦେଶବ୍ୟାପୀ ଯେଉଁ ଗଣବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ସେଥିରୁ ଏହା ସ୍ପଷ୍ଟ ହୋଇଛି । ଏପରି ଘଟଣା ସବୁ ଘଟିଗଲା ପରେ ମଧ୍ୟ ଭାରତ ସରକାର ଗୋଆ ଓ ପର୍ତ୍ତୁଗୀଜ ଅଧିକୃତ ଅନ୍ୟାନ୍ୟ ଅଞ୍ଚଳର ମୁକ୍ତି ପାଇଁ କୌଣସି ଫଳପ୍ରଦ ବ୍ୟବସ୍ଥା ନ ନେଇ ଓଲଟି ଏଥି-ପାଇଁ ହେଉଥିବା ମିଳିତ ଜନଆନ୍ଦୋଳନକୁ ବିଭେଦ ଗ୍ରସ୍ତ କରିବାକୁ ପଛେଇ ନାହାନ୍ତି । କଂଗ୍ରେସ ଲୋକଙ୍କ ସମେତ ସବୁ ଦଳ ଦ୍ୱାରା ମିଳିତ ଭାବେ ସଗଠିତ ହୋଇଥିବା ଏହି ଆନ୍ଦୋଳନକୁ ନିନ୍ଦା କରାଯାଇଛି । ପରିଶେଷରେ ଗୋଆର ମୁକ୍ତି ଆନ୍ଦୋଳନକୁ ସାହାଯ୍ୟ କରିବାକୁ ଯାଉଥିବା ସତ୍ୟାଗ୍ରହୀଙ୍କ ଉପରେ ସରକାରଙ୍କ ତରଫରୁ ନାନା ଜୁଲୁମ ହୋଇଛି । ଏହି ନୀତି ଫଳରେ ପର୍ତ୍ତୁଗୀଜ୍-ମାନେ ଲୋକଙ୍କ ଉପରେ ଆହୁରି ଅତ୍ୟାଚାର କରିବାକୁ ସାହସ ପାଇଛନ୍ତି । ଆଜି ମଧ୍ୟ ଆମ ଦେଶର ଅସଂଖ୍ୟ ସତ୍ୟାଗ୍ରହୀ ଭାଇ ଭଉଣୀମାନେ ପର୍ତ୍ତୁଗୀଜ୍ କାରାଗାରରେ ସଡ଼ୁଛନ୍ତି ।

ଭାରତର କମ୍ୟୁନିଷ୍ଟ ପାର୍ଟି ଗୋଆ ଓ ପର୍ତ୍ତୁଗୀଜ୍ ଅଧିକୃତ ଅନ୍ୟାନ୍ୟ ଅଂଚଳକୁ ମୁକ୍ତ କରିବା ପାଇଁ ବ୍ୟାପକ ଗଣଆନ୍ଦୋଳନ ସୃଷ୍ଟି କରିବାରେ ସକ୍ରିୟ ନେତୃତ୍ୱର ଅଂଶ ଗ୍ରହଣ କରିଥିଲା ।

ବହୁ କମ୍ୟୁନିଷ୍ଟ ପର୍ତ୍ତୁଗୀଜ୍ ଗୁଳିର ଶିକାର ହୋଇଛନ୍ତି । ଆଜି ଗୋଆ ସମ୍ପର୍କରେ ଭାରତ ସରକାରଙ୍କ କ୍ଳୀବ ମତକୁ କମ୍ୟୁନିଷ୍ଟ ପାର୍ଟି ପ୍ରତିବାଦ କରୁଛି । ଗୋଆ ଭାରତର ଏକ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ସେଠାକାର ଲୋକ ଭାରତୀୟ ଯୁକ୍ତରାଷ୍ଟ୍ରରେ ଯୋଗ ଦେବାକୁ ଗଭୀର ଇଚ୍ଛା ପ୍ରକାଶ କରୁଛନ୍ତି । କେବଳ ସେତିକି ନୁହେଁ, ଆକ୍ରମଣାତ୍ମକ ଉତ୍ତର ଆଟଲାଣ୍ଟିକ୍ ଚୁକ୍ତିରେ ଯୋଗ ଦେଇଥିବା ପର୍ତ୍ତୁଗାଲ, ଆମ ଦେଶର ଏକ ଅଂଚଳକୁ କ୍ରମାଗତ ଭାବେ ଦଖଲ କରି ରହିବା ଭାରତର ନିରାପତ୍ତା ପାଇଁ ଏକ ମସ୍ତବଡ଼ ବିପଦ ।

ଭାରତରେ ଫରାସୀ ଅଧିକୃତ ଅଞ୍ଚଳର ମୁକ୍ତିରେ ସାରା ଭାରତ ଆନନ୍ଦିତ । ଏହି ଦାୟିତ୍ୱକୁ ପୂରଣ କରିବା ଦିଗରେ କମ୍ୟୁନିଷ୍ଟ ପାର୍ଟି ଯେଉଁ ଭୂମିକା ନେଇଥିଲା ତାହା ସମସ୍ତ ଦେଶବାସୀ ବିଶେଷକରି ସେଠାକାର ଅଧିବାସୀ ଜାଣନ୍ତି । ଦେଶପ୍ରେମୀ ଜନଶକ୍ତି ଅନ୍ୟାନ୍ୟ କେତେକ କ୍ଷେତ୍ରରେ ମଧ୍ୟ ଅଗ୍ରଗତି କରିଛି ।

କଂଗ୍ରେସ ନେତୃତ୍ୱ ଓ ସରକାରର ବିରୋଧ ସତ୍ତ୍ୱେ ଭାଷାଭିତ୍ତିରେ ପ୍ରଦେଶ ଗଠନର ଆନ୍ଦୋଳନ ଅଧିକାଂଶ ସ୍ଥାନରେ ଆଶାନୁରୂପ ଭାବରେ ଜୟଯୁକ୍ତ ହୋଇଛି । ଗଡ଼ଜାତ ରାଜ୍ୟ ଯେଉଁଗୁଡ଼ିକ କ ପ୍ରତିକ୍ରିୟାର ଦୁର୍ଗ ଥିଲା, ସେଠାରୁ ସାମନ୍ତବାଦୀ ଶାସନର ବିଲୋପ ଘଟିଛି । ବିଭିନ୍ନ ପ୍ରଦେଶର ମିଶ୍ରଣ ପାଇଁ ଓ ବହୁଭାଷୀକ ପ୍ରଦେଶଗଠନ ପାଇଁ ଶାସକ ଗୋଷ୍ଠୀର ଯେଉଁ ଚକ୍ରାନ୍ତ ଚାଲିଥିଲା ତାହା ପୂରାପୂରି ପଣ୍ଡ ହୋଇଛି ।

ଦେଶର ପୁନର୍ନିର୍ମାଣ ପାଇଁ ଶକ୍ତିଶାଳୀ ଜାତୀୟ ଆକାଂକ୍ଷାକୁ ଉପେକ୍ଷା କରିବାର ଶକ୍ତି କୌଣସି ସରକାରର ରହି ନ ପାରେ । "ଇମ୍ପେରିୟାଲ ବ୍ୟାଙ୍କ" ଓ ଜୀବନ ବୀମାକୁ ଜାତୀୟକରଣ

କରିବାରେ, ୨ୟ ପଞ୍ଚବାର୍ଷିକ ଯୋଜନାର କେତେକ ପ୍ରସ୍ତାବରେ ଓ ଲକ୍ଷ୍ୟରେ ଏହି ଆକାଙ୍‌କ୍ଷା ହିଁ ପ୍ରତିବମ୍ବିତ ହୋଇଅଛି ।

ନାରୀମାନଙ୍କର ସାମାଜିକ ଆସନକୁ ଉନ୍ନତ କରିବା ପାଇଁ ହିନ୍ଦୁ ଆଇନ କେତେକ ପରିମାଣରେ ସଂଶୋଧିତ ହୋଇଛି ।

ଦଳିତ ଜାତିମାନଙ୍କ ଉପରେ ଚାଲୁଥିବା କେତେକ ଅନ୍ୟାୟ ଜୁଲୁମକୁ ବେଆଇନ ଘୋଷଣା କରି ଯାଇଅଛି । ଜନସାଧାରଣଙ୍କ ମଧ୍ୟରେ ଗଣତାନ୍ତ୍ରିକ, ବିପ୍ଳବୀ ଓ ସମାଜବାଦୀ ଚିନ୍ତାଧାରା ଦ୍ରୁତ ଭାବରେ ପ୍ରସାର ପାଇଅଛି । ଏହାର ଫଳସ୍ୱରୂପ ବହୁ ଆକ୍ରମଣକୁ ପରାସ୍ତ କରି ଜନ ଆନ୍ଦୋଳନ ନିଜର ଅନେକ ଦାବୀ ହାସଲ କରି ପାରିଅଛି ।

ଏହି ସବୁ ପରିବର୍ତ୍ତନ ଆଣିବା ପାଇଁ ବିଧାନସଭା ଭିତରେ କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ଗଣତାନ୍ତ୍ରିକ ଦଳର ଭୂମିକା ଯଥେଷ୍ଟ ସାହାଯ୍ୟକାରୀ ହୋଇଛି ।

## ଘୃଣ୍ୟ ଭାଗ୍ଣ ଅବସ୍ଥା ଏବେ ମଧ୍ୟ ରହିଛି

ଏହିସବୁ ଅଗ୍ରଗତି ସତ୍ତ୍ୱେ, ଆମର ଅର୍ଥନୀତିରେ ଆଂଶିକ ଉନ୍ନତି ହୋଇଥିଲେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଘୋଷିତ ହୋଇଥିବା ଲକ୍ଷ୍ୟଠାରୁ ଆମ ଦେଶ ଆହୁରି ବହୁ ଦୂରରେ ରହିଛି ।

ଆମ ଅର୍ଥନୀତିର ଅନେକ ଗୁରୁତ୍ୱ ପୂର୍ଣ୍ଣ ବିଭାଗରେ ଯେଉଁ ବ୍ରିଟିଶ କର୍ତ୍ତୃତ୍ୱ ରହିଛି ତାହା ଲୋପକରିବା ଦୂରେ ଥାଉ, ଏହା ଉପରେ କୌଣସି ପ୍ରକାରର ଆଞ୍ଚ ମଧ୍ୟ ଆସି ନାହିଁ ।

ଆମର କୋଇଲା ଓ ମାଙ୍ଗାନିଜ ଖଣି, ଝୋଟ ଶିଳ୍ପ, ଚା ବଗିଚା ଓ ବୈଦେଶିକ ବାଣିଜ୍ୟ ଇତ୍ୟାଦି ଅନେକ କ୍ଷେତ୍ରରେ ବ୍ରିଟିଶ ପୁଞ୍ଜୀର କର୍ତ୍ତୃତ୍ୱ ପୂରାପୂରି ରହିଛି । ଏଥିରୁ ଯେଉଁ ଅକଳନ୍ତ

ଲାଭ ବିଦେଶୀ ପୁଞ୍ଜୀ ହାତକୁ ଯାଉଛି, ତାହା ଆମ ଦେଶ ଗଠନ କାର୍ଯ୍ୟରେ ଲଗାଇ ପାରିଲେ, ଆମର ଅଗ୍ରଗତି ଅନେକ ବେଶୀ 'ଦ୍ରୁତ ହୁଅନ୍ତା । ରାଷ୍ଟ୍ରୀୟ ଶିଳ୍ପକୁ ଶକ୍ତିଶାଳୀ କରିବାକୁ ହେଲେ ଏଗୁଡ଼ିକର ଜାତୀୟକରଣ, ନିତାନ୍ତ ଆବଶ୍ୟକ । କିନ୍ତୁ ଏ ସଂକ୍ରାନ୍ତରେ ସମସ୍ତ ଗଣଦାବୀକୁ ସରକାର ଉପେକ୍ଷା କରିଛନ୍ତି ।

ଆମ ଦେଶଠାରୁ ଅନେକ ଶ୍ରେଷ୍ଠ ହେଲେ ମଧ୍ୟ ଅନେକ କ୍ଷେତ୍ରରେ ଆମଠାରୁ ଆହୁରି ଦୁର୍ବଳ ହେଲେ ମଧ୍ୟ ମିଶର ଯାହା କରିପାରିଲା, ଆମ ସରକାର ସେପରି କାର୍ଯ୍ୟ ପାଇଁ ପ୍ରସ୍ତୁତ ନୁହନ୍ତି । ଏପରି କି ବିଦେଶକୁ ପଠାଯାଉଥିବା ଲାଭ ମଧ୍ୟ ଏପର୍ଯ୍ୟନ୍ତ ବନ୍ଦ ହୋଇନାହିଁ । ବରଂ ବିଦେଶୀ ପୁଞ୍ଜିପତିମାନଙ୍କୁ ଏଠାରେ ମୂଳଧନ ଖଟାଇବାକୁ ନୂତନ ସୁବିଧା ଦିଆଯାଉଛି ।

ଅର୍ଥନୈତିକ କ୍ଷେତ୍ରରେ ଆମେ ବହୁ ପଛୁଆ ଓ ନିର୍ଭରଶୀଳ ହୋଇ ରହିଛୁ । ଆଜିର ଆନ୍ତର୍ଜାତିକ ଅବସ୍ଥାକୁ ବିଚାର କଲେ ଆମର ଜାତୀୟ ନିରାପତ୍ତା ପାଇଁ ଏହା ଯେ କେତେ ବଡ଼ ବିପଦ, ସହଜେ ଅନୁମେୟ । ଯେଉଁଜନଦାର ମୂଳ ଶିଳ୍ପ ହେଉଛି ଦେଶର ଶକ୍ତି ଓ ବିକାଶପାଇଁ ଏକ ପ୍ରଧାନ ମୂଳଦୁଆ । କିନ୍ତୁ ସେ ଦିଗରେ ଆମେ କେବଳ ପ୍ରାଥମିକ ଅବସ୍ଥାରେ ହିଁ ରହିଛୁ । ବ୍ୟବହାର୍ଯ୍ୟ ଜିନିଷ ଉତ୍ପାଦନରେ ଆମର ଅଗ୍ରଗତି ଜନସାଧାରଣଙ୍କ ପ୍ରାଥମିକ ଚାହିଦାକୁ ମଧ୍ୟ ମେଣ୍ଟାଇ ପାରୁ ନାହିଁ । ଲୋକଙ୍କର କିଣିବାର ଶକ୍ତି ନଥିବାରୁ ଏ ଦିଗରେ ଆମର ଅଗ୍ରଗତି ଧିମେଇ ଯାଉଛି । ଅନେକେ ଶିଳ୍ପ ଉତ୍ପାଦନ ପାଇଁ ସେମାନଙ୍କର ପୂରା ଶକ୍ତି ଖଟାଇ ପାରୁ ନାହାନ୍ତି ।

ରାଷ୍ଟ୍ରୀୟ ଶିଳ୍ପ ବିଭାଗ ଖୁବ୍ ପଛରେ ପଡ଼ି ରହିଛି । ଯେଉଁ କେତୋଟି କ୍ଷେତ୍ରରେ ଏହା କାର୍ଯ୍ୟ କରୁଛି ସେଠି ମଧ୍ୟ ଏହା

ଫଳପ୍ରଦ ଭାବେ କାର୍ଯ୍ୟକାରୀ ହେଉ ନାହିଁ । ଅମଲାତାନ୍ତ୍ରିକତା ଦୁର୍ନୀତି ଓ ଯୋ ହୁକୁମ ଜାହିର କରିବା ଫଳରେ ଲୋକ-ଶକ୍ତିଠାରୁ ଏହା ଦୂରେଇ ଯାଉଛି ଏବଂ ଏହି ଦୁର୍ବଳତାର ପୂର୍ଣ୍ଣ ସୁଯୋଗ ନେଇ ପ୍ରତିକ୍ରିୟାଶୀଳ ଶକ୍ତିମାନେ ରାଷ୍ଟ୍ରୀୟ ଶିଳ୍ପ ପ୍ରସାରର ସମସ୍ତ ପରିକଳ୍ପନାକୁ ଆକ୍ରମଣ କରିବାକୁ ଛାଡ଼ୁ ନାହାନ୍ତି ।

ଆମର କୃଷି ବ୍ୟବସ୍ଥା ଏ ପର୍ଯ୍ୟନ୍ତ ବି ସେଇ ଆଦିମ ଯୁଗରେ ରହିଛି । ଅନୁକୂଳ ମୌସୁମୀ ଉପରେ ନିର୍ଭର କରିବା ଛଡ଼ା ଆମର ଅନ୍ୟ ଗତି ରହୁ ନାହିଁ । ଏକର ପିଛା ଆମ ଜମିର ଉତ୍ପାଦନ ପୃଥିବୀରେ ସର୍ବନିମ୍ନ ।

ଦାରିଦ୍ର୍ୟ ଓ ଦୁରବସ୍ଥା ଆମକୁ ଲାଗି ରହିଛି । ଅନ୍ନାଭାବ, ବସ୍ତ୍ରାଭାବ, ନିରକ୍ଷରତା, ରୋଗ, ବାସଗୃହର ଅଭାବ—ଏସବୁ ସାଧାରଣ ଜନତାର ନିତିଦିନର ସଙ୍ଗୀ ।

ଶଠା ଯୋଜନାରେ ଉଲ୍ଲେଖ ରହିଛି—"ଭାରତର ଅଧାଅଧି ଲୋକ ନିଜର ବ୍ୟବହାର୍ଯ୍ୟ ଜିନିଷ ପାଇଁ ମାସକୁ ୧୩ ଟଙ୍କାରୁ କମ ଖର୍ଚ୍ଚ କରନ୍ତି ଏବଂ ଏ ପରିମାଣର ପ୍ରାୟ ଅଧେ ଭାଗ ଗୃହଜାତ ଖାଦ୍ୟଦ୍ରବ୍ୟ ଓ ଗୃହଜାତ ଜିନିଷରୁ ମେଣ୍ଟି ଯାଏ ।"

ସହର ଓ ଗ୍ରାମରେ ଶ୍ରମିକ, ବୁଦ୍ଧିଜୀବି, କାରିଗର ଓ କ୍ଷେତ-ମୂଲିଆ ଆଦି ସବୁ ଶ୍ରେଣୀପାଇଁ ବେକାର ସମସ୍ୟା ଏକ ଭୟାବହ ରୂପ ନେଇଛି । ଶିଳ୍ପ ଯେଉଁ ପରିମାଣରେ ବୃଦ୍ଧି ପାଉଛି ସେହି ଅନୁପାତରେ ଲୋକମାନେ ଅଧିକ ସଂଖ୍ୟାରେ ନିଯୁକ୍ତି ପାଉ ନାହାନ୍ତି, ଏପରିକି ଅନେକ ଶିଳ୍ପରେ ନିଯୁକ୍ତ ହୋଇଥିବା ଶ୍ରମିକଙ୍କ ସଂଖ୍ୟା କମି ଯାଇଛି । କେତେକ ରାଷ୍ଟ୍ରୀୟ ଶିଳ୍ପରେ ମଧ୍ୟ ସ୍ୱୟଂ ସରକାରଙ୍କଦ୍ୱାରା ବହୁ ସଂଖ୍ୟାରେ ଛଟେଇ କରାଯାଉଛି । ଏହିସବୁ ବେକାରୀ ସମସ୍ୟାକୁ ଆହୁରି ତୀବ୍ର କରୁଛି ।

ଉତ୍ପାଦନ ବୃଦ୍ଧି ପାଇଥିଲେ ମଧ୍ଯ ଜିନଷପତ୍ରର ଦରଦାମ କମି ନାହିଁ । ଓଲଟି ଖାଦ୍ୟ ଦ୍ରବ୍ୟର ଦର ହଠାତ୍ କମିଯାଇ ଚାଷୀମାନେ କୋଟି କୋଟି ଟଙ୍କା କ୍ଷତିଗ୍ରସ୍ତ ହେଲାପରେ ବର୍ତ୍ତମାନ ନଅଣ୍ଡିଆ ଅର୍ଥ ବ୍ୟବସ୍ଥା ଯୋଗୁଁ ଏବଂ ଉତ୍ପାଦନ ଓ ବାଣିଜ୍ୟ ଉପରେ ଏକଚୁଟିଆ କର୍ତ୍ତୃତ୍ୱ ହେତୁ ଖାଦ୍ୟଦ୍ରବ୍ୟ ଓ ଦୈନନ୍ଦିନ ବ୍ୟବହାର୍ଯ୍ୟ ଜିନଷର ଦାମ ହୁ ହୁ ବଢ଼ି ଯାଉଛି । ଅର୍ଥନୀତିର ଏହି ଦୁରବସ୍ଥାକୁ ସମ୍ଭାଳିବା ସାଧାରଣ ଲୋକପକ୍ଷରେ ଅସମ୍ଭବ ହୋଇ ପଡ଼ୁଛି । ଖାଦ୍ୟ ଦ୍ରବ୍ୟର ଦରବୃଦ୍ଧିରେ ଚାଷୀର କୌଣସି ଉପକାର ନ ହୋଇ ଜମିଦାର ଓ ଏକଚୁଟିଆ ଶସ୍ୟ-ବ୍ୟବସାୟୀଙ୍କର ପ୍ରଚୁର ଲାଭ ହେଉଛି ।

ସର୍ବୋପରି ଶ୍ରମିକ ଶ୍ରେଣୀର ଶ୍ରମବୃଦ୍ଧି ଫଳରେ ଉତ୍ପାଦନ ବୃଦ୍ଧିପାଇଛି; କିନ୍ତୁ ଶ୍ରମିକ ଶ୍ରେଣୀ ଏଥିରୁ କିଛି ଲାଭ ପାଇ ନାହିଁ । ୧୯୩୯ ରେ ମଜୁରିର ହାର ଯାହା ଥିଲା, ତାହାର କୌଣସି ବୃଦ୍ଧି ନ ହୋଇ ପୁଞ୍ଜିପତିମାନେ ଅତ୍ୟଧିକ ମୁନାଫା ଉଠାଉଛନ୍ତି । କାରଖାନା ଆୟରେ ଶ୍ରମିକମାନଙ୍କର ଅଂଶ କମିବା ସଙ୍ଗେ ସଙ୍ଗେ ପୁଞ୍ଜିପତିମାନଙ୍କ ଭାଗ ବୃଦ୍ଧିପାଇଛି ।

କଳକବ୍‌ଜାର ଉନ୍ନତି କରି, ଶ୍ରମିକ ଛଟେଇ କରି, ଶ୍ରମଭାର ବଢ଼ାଇଦେଇ ମିଲ ମାଲିକମାନେ ଶ୍ରମିକ ଶ୍ରେଣୀର ସ୍ୱାର୍ଥ ଉପରେ ଆକ୍ରମଣ କରିଛନ୍ତି । ସରକାରୀ ନୀତି ପୁଞ୍ଜିବାଦର ଏହି ଆକ୍ରମଣକୁ ଅଧିକାଂଶ କ୍ଷେତ୍ରରେ ସହାୟତା କରିଛି । ଶ୍ରମିକ ସ୍ୱାର୍ଥ ଉପରେ ଏ ପ୍ରକାର ଆକ୍ରମଣ ଫଳରେ ଧର୍ମଘଟ ଆଦି ସୃଷ୍ଟି ହୋଇ ଉତ୍ପାଦନ ଦିଗରୁ ସାରା ଦେଶର କ୍ଷତି ହୋଇଛି ।

ସରକାରଙ୍କ ପୃଷ୍ଠ ପୋଷକତା ଲାଭ କରୁଥିବା ଜାତୀୟ ଟ୍ରେଡ୍ ୟୁନିଅନ୍ ସଂଗଠନକୁ ବହୁ ସ୍ଥାନରେ ଶ୍ରମିକ ଶ୍ରେଣୀ

ଉପରେ ଲଦି ଦିଆଯାଇଛି । ଅନ୍ୟ ପକ୍ଷରେ ବ୍ୟାପକ ଶ୍ରମିକ ଜନତାର ସମର୍ଥନ ପାଉଥିଲେ ମଧ୍ୟ ଅନ୍ୟାନ୍ୟ ଟ୍ରେଡ୍ ଇଉନିୟନ ସଂଗଠନକୁ ଅନେକ ସ୍ଥାନରେ ସ୍ୱୀକୃତ ଦିଆଯାଇ ନାହିଁ । ଏହାର ଫଳ ସ୍ୱରୂପ ଏକ ସୁସ୍ଥ ଟ୍ରେଡ୍ ଇଉନିୟନ ଆନ୍ଦୋଳନ ଗଢ଼ି ନ ଉଠି, ସମସ୍ତ ଶ୍ରମିକ ଆନ୍ଦୋଳନ ବିଭେଦଗ୍ରସ୍ତ ହୋଇଛି ।

ଖୁବ୍ ବଡ଼ ପାଟିରେ ପ୍ରଚାରିତ ହେଉଥିବା କୃଷି ସଂସ୍କାର, କୃଷକର ମୌଳିକ ଭୂମି ସମସ୍ୟାର କୌଣସି ସମାଧାନ ଆଣି ନାହିଁ । ଏହାଦ୍ୱାରା ମୁଷ୍ଟିମେୟ କେତେକ ଲୋକେ ଲାଭବାନ୍ ହୋଇଛନ୍ତି । ଅଧିକ ସଂଖ୍ୟକ ଚାଷୀଙ୍କ ବୃତ୍ତିକୁ ନିରାପଦ ଓ ସୁରକ୍ଷିତ କରାଯାଇ ନାହିଁ । ଆଜି ପର୍ଯ୍ୟନ୍ତ ଗ୍ରାମାଞ୍ଚଳରେ ଶତକଡ଼ା ମାତ୍ର ୩ ଭାଗ ପରିବାର ଶତକଡ଼ା ୩୬ ଭାଗ ଜମିର ଅଧିକାରୀ ଏବଂ ଶତକଡ଼ା ୭୫ ଭାଗ ପରିବାରଙ୍କ ହାତରେ ସବୁ ମିଶି ଶତକଡ଼ା ୧୬ ଭାଗ ଜମି ଅଛି । ବହୁତ ପ୍ରଦେଶରେ ଖଜଣାର ହାର ଅତି ଅଧିକ । ଜଳକର ଅତ୍ୟଧିକ ବୃଦ୍ଧି ପାଇଛି । ଉନ୍ନୟନ କର ଆଦି ହଜାର ପ୍ରକାର କର ଲୋକଙ୍କ ଉପରେ ଲଦି ଦିଆ ହୋଇଛି । କୃଷିଜାତ ଦ୍ରବ୍ୟର ମୂଲ୍ୟରେ ଅସ୍ୱାଭାବିକ ହ୍ରାସ ବୃଦ୍ଧି ଲାଗିରହିଛି । ଏସବୁର ଫଳ ସ୍ୱରୂପ ଚାଷୀର ଅବସ୍ଥା ଦିନୁଦିନ ଆହୁରି ଶୋଚନୀୟ ହେଉଛି ଏବଂ ତାର ଋଣଭାର ବଢ଼ି ଚାଲିଛି । କୃଷି ଉତ୍ପାଦନ ଯେଉଁ ଭାବରେ ବୃଦ୍ଧି ପାଇବା କଥା ତାହା ହେଉ ନାହିଁ । ଉତ୍ପାଦନରେ ଯାହା ବା ବୃଦ୍ଧି ହେଉଛି, ତାହା ଉପରେ ନିର୍ଭର କରାଯାଇପାରେ ନା । ଜମିଦାରମାନେ ଗତ କେତେବର୍ଷ ହେଲା ଅଧିକରୁ ଅଧିକ ସଂଖ୍ୟକ ଚାଷୀଙ୍କୁ ଜମିରୁ ଉଚ୍ଛେଦ କରିବାରେ ଲାଗିଛନ୍ତି । କଂଗ୍ରେସ ଶାସନ ତଳେ ଗତ କେଇବର୍ଷ ଭିତରେ

ଯେତେ ସଂଖ୍ୟାରେ ଚୃଷୀଙ୍କୁ ଉଚ୍ଛେଦ କରାଯାଇଛି, ପୂର୍ବର ଶହେବର୍ଷ ଭିତରେ ମଧ୍ୟ ଏତେ ଚୃଷୀ ଉଚ୍ଛେଦ ହୋଇ ନ ଥିଲେ ।

ଗ୍ରାମ୍ୟ ଅଧିବାସୀମାନଙ୍କ ଭିତରୁ ଶତକଡ଼ା ୩୦ ଭାଗ ଲୋକେ କ୍ଷେତ ମୂଲିଆ । ଏମାନଙ୍କ ଭିତରୁ ଅଧିକାଂଶ ଲୋକ କୌଣସି କାମ ନ ପାଇ ବର୍ଷର ୬ ମାସ ବେକାର ହୋଇ ବସି ଥା'ନ୍ତି । ଏମାନେ କେଉଁ ଦୁରବସ୍ଥା ଭିତରେ ଚଳନ୍ତି, ତାହା ସମସ୍ତଙ୍କୁ ଜଣା । ସରକାର ଅଧିକାରରେ ଥିବା ଚୃଷୋପଯୋଗୀ ଅନାବାଦୀ ଜମିକୁ ଚୃଷ କରିବାପାଇଁ ଏମାନଙ୍କ ହାତରେ ଛାଡ଼ି-ଦେବା ପାଇଁ କୌଣସି ଚେଷ୍ଟା ହେଉ ନାହିଁ । ବରଂ ଅନ୍ୟ ପକ୍ଷରେ ନିଲାମ ଧରି ଏହି ସବୁ ଜମିକୁ ଭୋଗ କରୁଛନ୍ତି । ଦଶବର୍ଷ ତଳେ ସର୍ବନିମ୍ନ ମଜୁରୀ ସଂପର୍କରେ ଯେଉଁ ଆଇନ ପାଶ୍ ହୋଇଥିଲା ତାହା କାଗଜ କଲମରେ ରହିବା ହିଁ ସାର ହୋଇଛି ।

ସରକାରୀ କର୍ମଚାରୀଙ୍କ ସମେତ ସମସ୍ତ ମଧ୍ୟବିତ୍ତ କର୍ମଚାରୀ, ଶିକ୍ଷକ ଓ କିରାଣୀ ଆଦିଙ୍କ ଅବସ୍ଥା ଶ୍ରମିକ ଶ୍ରେଣୀ ପରି ଶୋଚନୀୟ ହୋଇଛି । କମ୍ ଦରମା, ବେକାରୀ ଓ ବାସଗୃହ ଆଦି ସମସ୍ୟାରେ ସେମାନେ ଘାରି ହେଉଛନ୍ତି । ଜିନିଷ ପତ୍ରର ମୂଲ୍ୟ ବୃଦ୍ଧି ଫଳରେ ସେମାନଙ୍କର ଦରମା ପ୍ରକୃତ ପକ୍ଷେ ହ୍ରାସ ହୋଇଛି ।

ଗ୍ରେଟ ଶିଳ୍ପପତି ଓ ଖୁଚୁରା ବ୍ୟବସାୟୀମାନଙ୍କ ଅବସ୍ଥାର କୌଣସି ଉନ୍ନତି ହୋଇ ନାହିଁ । ବହୁ ଗ୍ରେଟ ଗ୍ରେଟ କାରଖାନା ବନ୍ଦ ହୋଇଯାଉଛି । ଋଣ ଦେବା ଓ କଞ୍ଚାମାଲ ଯୋଗାଇବାରେ ଯେଉଁସବୁ ବ୍ୟବସ୍ଥା ହେଉଛି ତହିଁରେ ବଡ଼ ବଡ଼ ଶିଳ୍ପପତିଙ୍କ ପାଇଁ ପକ୍ଷପାତିତା କରାଯାଉଛି । ସେଲ୍ ଟିକସ ବରାବର ବଢ଼ିବାରେ ଲାଗିଛି ଏବଂ ଏଥିଯୋଗୁଁ ସାଧାରଣ ଲୋକଙ୍କ ସମେତ ଦୋକାନୀ ବ୍ୟବସାୟୀମାନେ ମଧ୍ୟ ବହୁ ଅସୁବିଧା ଭୋଗ କରୁଛନ୍ତି ।

ବହୁସଂଖ୍ୟକ ଶରଣାର୍ଥୀଙ୍କୁ ଏପର୍ଯ୍ୟନ୍ତ ଥଇଥାନ କରା-ଯାଇ ନାହିଁ । ସେମାନେ ହଜାର ହଜାର ସଂଖ୍ୟାରେ ବେକାର ଓ ଗୃହହୀନ ଭାବରେ ପଡ଼ିରହିଛନ୍ତି ।

ଗୃକରୀ ଓ ଜୀବନ ଧାରଣରେ ଟିକିଏ ଉନ୍ନତି ଆଣିବାପାଇଁ ଆମ ସୈନ୍ୟ ବାହିନୀର ସର୍ବନିମ୍ନ ଦାବୀକୁ ସରକାର ଉପେକ୍ଷା କରିଛନ୍ତି । ସୈନ୍ୟ ବାହିନୀର ତଳପାହ୍ୟା ଲୋକଙ୍କ ପ୍ରତି ନାନା ପ୍ରକାର ଅପମାନଜନକ ଦୁର୍ବ୍ୟବହାର ହୁଏ । ପୋଲିସ ବାହିନୀର ତଳପାହ୍ୟା କର୍ମଚାରୀଙ୍କ ଅବସ୍ଥା ମଧ୍ୟ ଏହାଠାରୁ କିଛି ଭଲ ନୁହେଁ । ଆମର ସାଧାରଣ ସ୍ୱାସ୍ଥ୍ୟ ଏକ ଭୟାବହ ଅବସ୍ଥାରେ ଅଛି ।

ଆମ ଦେଶରେ ୫ ବର୍ଷରୁ କମ୍ ବୟସ୍କ ଶିଶୁଙ୍କ ମୃତ୍ୟୁର ସଂଖ୍ୟା, ସର୍ବମୋଟ ମୃତ୍ୟୁର ଶତକଡ଼ା ୪୦ ଭାଗରୁ ବେଶି । ମାତୃ-ମଙ୍ଗଳ ଓ ଶିଶୁମଙ୍ଗଳ କେନ୍ଦ୍ରଗୁଡ଼ିକର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । ସମସ୍ତ ମଫସଲ ଅଞ୍ଚଳରେ ମ୍ୟାଲେରିଆ ବ୍ୟାପି ରହିଛି । ଆବଶ୍ୟକୀୟ ଖାଦ୍ୟ ମିଳୁ ନଥିବାରୁ ଓ ଅସ୍ୱାସ୍ଥ୍ୟକର ଅବସ୍ଥା ହେତୁ ଯକ୍ଷ୍ମା ରୋଗୀଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛି । ହିସାବରେ, ପ୍ରତି ପାଞ୍ଚହଜାର ଲୋକଙ୍କ ପିଛା ହାରାହାରି ଜଣେ ଲେଖାଏଁ ଡାକ୍ତର ପଡ଼ିବେ । କିନ୍ତୁ ସହର ଅଞ୍ଚଳରେ ଡାକ୍ତର ମାନେ ବେଶି ସଂଖ୍ୟାରେ ଥିବାରୁ ମଫସଲ ଅଞ୍ଚଳପାଇଁ ହିସାବକଲେ ପ୍ରାୟ ୩୦୦୦୦ ଲୋକଙ୍କ ପାଇଁ ଜଣେ ଲେଖାଏଁ ଡାକ୍ତର ପଡ଼ିବେ । ଔଷଧର ଦାମ୍ ଖୁବ୍ ଅଧିକ ଏବଂ ତା ମଧ୍ୟ ସବୁଆଡ଼େ ମିଳେ ନାହିଁ । ହାସପାତାଲ ଚିକିତ୍ସାର ପ୍ରୟୋଜନ ଥିବା ରୋଗୀଙ୍କ ଭିତରୁ ଅଧିକାଂଶଙ୍କୁ ଡାକ୍ତରଖାନାରେ ସ୍ଥାନ ମିଳେ ନାହିଁ । ଏଣେ କିନ୍ତୁ ଶହ ଶହ ଡାକ୍ତର ଚାକିରି ନ ପାଇ ବସି ରହିଛନ୍ତି ।

ଏଇ କେତେ ବର୍ଷ ହେଲା ଶିକ୍ଷାର କିଛି ପ୍ରସାର ଘଟିଛି । କିନ୍ତୁ ବର୍ତ୍ତମାନ ମଧ୍ୟ ବହୁସଂଖ୍ୟକ ପିଲା ସ୍କୁଲରେ ପଢ଼ି ପାରୁ-ନାହାନ୍ତି । ଶିକ୍ଷକମାନଙ୍କୁ ଅତି କମ୍ ଦରମା ମିଳୁଛି । ଯଥେଷ୍ଟ ସଂଖ୍ୟାରେ ସ୍କୁଲ ନ ଥିବାରୁ ଗୋଟିଏ ଗୋଟିଏ ସ୍କୁଲରେ ଛାତ୍ରଙ୍କ ସଂଖ୍ୟା ଅତ୍ୟଧିକ ବଢ଼ିଯାଉଛି ଓ ଶିକ୍ଷକମାନେ ଛାତ୍ରମାନଙ୍କ ପ୍ରତି ଉପଯୁକ୍ତ ନଜର୍ ଦେବାକୁ ଅସମର୍ଥ ହେଉଛନ୍ତି । ଦେଶର ବ୍ୟାପକ ସାଧାରଣ ଦାରିଦ୍ର୍ୟ ସାଙ୍ଗକୁ ଶିକ୍ଷାର ଖର୍ଚ୍ଚ ମଧ୍ୟ ବଢ଼ିଯାଇଛି । ବହିପତ୍ରର ମୂଲ୍ୟ ଓ ବିଦ୍ୟାଳୟର ଦରମା ଆହୁରି ଅନେକ ବଢ଼ି ଯାଇଛି । ସରକାରଙ୍କର ଶିକ୍ଷାନୀତିରେ ଅନେକ ତ୍ରୁଟି ରହିଛି । ଏପର୍ଯ୍ୟନ୍ତ ବି ଶିକ୍ଷାର ମାଧ୍ୟମ ରୂପେ ଇଂରାଜୀର ଏକ ପ୍ରଧାନ ଆସନ ରହିଛି । ଏ ସବୁକୁ ବିଚାର କଲେ ଦେଖାଯିବ ଯେ ଶିକ୍ଷା ବିଷୟରେ ଆମର ଅବସ୍ଥା ମୋଟେ ସନ୍ତୋଷଜନକ ନୁହେଁ । ଶିକ୍ଷାର ମାନ ପୂର୍ବ ଅପେକ୍ଷା ଖୁବ୍ ତଳକୁ ଓହ୍ଲାଇ ଆସିଛି । ଦେଶର ଭବିଷ୍ୟତ ପାଇଁ ଏହା ଏକ ଆଶଙ୍କାର ବିଷୟ । କାରିଗରୀ ଶିକ୍ଷା ପାଇଁ କୌଣସି ଆଶାନୁରୂପ ବ୍ୟବସ୍ଥା ନାହିଁ । ଜାତିର ପୁନର୍ଗଠନ ପାଇଁ ଦେଶରେ କାରିଗରୀ ଶିକ୍ଷାର ଆଜ ଯେଉଁ ପ୍ରୟୋଜନ ରହିଛି ସେ ଦିଗରୁ ବିଚାରକଲେ କାରିଗରୀ ଶିକ୍ଷା-ନୁଷ୍ଠାନର ସଂଖ୍ୟା ଅତି ନଗଣ୍ୟ । ଯାହା ବା ଅଛି ସେଥିରେ ଶିକ୍ଷା ପାଇବା ଏତେ ବ୍ୟୟସାଧ୍ୟ ଯେ କେବଳ ଧନୀ ଶ୍ରେଣୀର ସନ୍ତାନ-ମାନେ ସେ ଖର୍ଚ୍ଚ ବହନ କରି ପାରିବେ ।

## ତେଲିଆ ମୁଣ୍ଡରେ ତେଲ

ଗତ ଦଶବର୍ଷର କଂଗ୍ରେସ ଶାସନ ଭିତରେ ଟିକସ ବଢ଼ି-ଚାଲିଛି ଓ ତାର ପ୍ରଧାନ ବୋଝ ସାଧାରଣ ଲୋକଙ୍କ ମୁଣ୍ଡରେ ଲଦା ହୋଇଛି । ଏହା ସାଙ୍ଗକୁ ଧନୀ ଶ୍ରେଣୀକୁ ସରକାର ତରଫରୁ

ନାନା ପ୍ରକାର ସୁବିଧା ଦିଆଯାଉଛି । ମୋଟ ହିସାବର ପରିମାଣକୁ ଧନୀ ଶ୍ରେଣୀର ଦେୟ ପୂର୍ବ ଅପେକ୍ଷା ଆହୁରି ଅନେକ କମି ଯାଇଛି । ନାନା ପ୍ରକାର ସୁବିଧା ପାଇବା ସଙ୍ଗେ ସଙ୍ଗେ ଧନୀ ଶ୍ରେଣୀର ଲୋକମାନେ ନାନା ବାଟରେ ଆୟକରକୁ ଫାଙ୍କି ଦେଇ ସରକାରର କୋଟି କୋଟି ଟଙ୍କା ଠକି ନେଉଛନ୍ତି ।

ଜାତୀୟ ଆୟ ଯଦିଓ କିଛି ପରିମାଣରେ ବଢ଼ି ଯାଇଛି ତଥାପି ଏହାର ବଣ୍ଟନ ଯେପରି ଭାବରେ ହୋଇଛି, ସେଥିରେ ଧନୀମାନେ ଆହୁରି ଧନୀ ହୋଇଛନ୍ତି । ସମ୍ପଦର କେନ୍ଦ୍ରୀକରଣ ହୋଇଛି, ଅର୍ଥାତ୍ କେତେ ଜଣଙ୍କ ହାତରେ ଗଦା ଗଦା ଅର୍ଥ ଠୁଳ ହୋଇଛି । ନିଜେ ସରକାର ମଧ୍ୟ ଏକଥା ମାନୁଛନ୍ତି ।

ବ୍ରିଟିଶ୍ ଶାସନବେଳେ ଆମ ସମାଜର ଯେମିତି ଖୁବ୍ ଅଳ୍ପ ସଂଖ୍ୟକ ଲୋକଙ୍କ ହାତରେ ସମସ୍ତ ସମ୍ପତ୍ତି ଠୁଳ ହେଉଥିଲା ଓ ଅଗଣିତ ଜନସାଧାରଣ ଦାରିଦ୍ର୍ୟର କଷଣ ଭୋଗୁଥିଲେ, ସେ ଅବସ୍ଥା କଂଗ୍ରେସ ରାଜୁତି ତଳେ ଆଜି ଆହୁରି ଭୟଙ୍କର ରୂପ ଧାରଣ କରିଛି । ଏହି କଂଗ୍ରେସ ଆଜି ପୁଣି ସାମ୍ୟବାଦ ସମ୍ପର୍କରେ ବଡ଼ବଡ଼ କଥା କହିବାକୁ ଲଜ୍ଜାବୋଧ କରୁ ନାହିଁ ।

ଅଳ୍ପ ଲୋକଙ୍କ ହାତରେ ସମସ୍ତ ସମ୍ପଦ ଠୁଳ ହେବା ଖାଲି ଏକ ସାମାଜିକ ଅନ୍ୟାୟ ବୋଲି କହିଲେ ଯଥେଷ୍ଟ ହେଲା ନାହିଁ । ଜାତୀୟ ପୁନର୍ଗଠନ ପାଇଁ ଜନସାଧାରଣଙ୍କର ସମସ୍ତ ଉତ୍ସାହକୁ ଏହା ଭାଙ୍ଗିଦିଏ । ଲକ୍ଷ୍ମୀଛିଡ଼ର ବୃଦ୍ଧିକୁ ଏହା ସାହାଯ୍ୟ କରେ । ଶ୍ରମିକର ସୃଜନଶୀଳ କର୍ମୋତ୍ସାହକୁ ଏହା ପୁରାପୂରି ପଙ୍ଗୁ କରିଦିଏ ।

ବଡ଼ବଡ଼ ପୁଞ୍ଜିପତି ଓ ଜମିଦାରମାନେ ଆଜି ପ୍ରଚୁର ସମ୍ପତ୍ତି ଓ କ୍ଷମତାର ଅଧିକାରୀ ହୋଇଥିବାରୁ, କଂଗ୍ରେସ ଓ ସରକାରର ନେତୃସ୍ଥାନୀୟ ଲୋକଙ୍କ ସହିତ ସମ୍ପର୍କ ରଖିଥିବାରୁ ଆମର ଅର୍ଥ-

ନୈତିକ, ସାମାଜିକ ଓ ରାଜନୈତିକ ଜୀବନ ଉପରେ ସେମାନଙ୍କ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହେଉଛନ୍ତି । ବହୁ ସାଧାରଣ ଅନୁଷ୍ଠାନ ଉପରେ ଏମାନଙ୍କ କର୍ତ୍ତୃତ୍ୱ ଜାରିକରିବାକୁ ଓ ଶାସନକଳକୁ ବିଭିନ୍ନ ଭାବରେ ପ୍ରଭାବିତ କରିବାକୁ ଏମାନେ ସକ୍ଷମ ହୋଇଛନ୍ତି । ଦେଶର ଅଧିକାଂଶ ବଡ଼ବଡ଼ ସମ୍ବାଦପତ୍ର ଉପରେ ଅଳ୍ପ କେତେକ ଲକ୍ଷପତିଙ୍କର ପୂର୍ଣ୍ଣ ଅଧିକାର ରହିଛି । ଏହି ପ୍ରକାର ଅବସ୍ଥା ଗଣତନ୍ତ୍ର ପାଇଁ ଏକ ମସ୍ତବଡ଼ ବିପଦ ଡାକି ଆଣିବ ।

## ଜାତୀୟ ଏକତାରେ ବିଭେଦ ଅଣାଯାଇଛି

କଂଗ୍ରେସ ପ୍ରଚାର କରେ ଯେ ଏହା ଜାତୀୟ ଏକତାକୁ ମଜବୁତ କରିଛି । ଏହିପ୍ରକାର ପ୍ରଚାର ପଛରେ କୌଣସି ତଥ୍ୟ ନାହିଁ ।

କଂଗ୍ରେସ ସରକାରର ନୀତି ଫଳରେ ଖାଲି ଅର୍ଥନୈତିକ କ୍ଷେତ୍ର କାହିଁକି ଅନ୍ୟ ସମସ୍ତ କ୍ଷେତ୍ରରେ ନାନା ବିବାଦ ଓ ସଂଘର୍ଷ ହୋଇଛି । ଭାଷାଗତ ପ୍ରଦେଶ ଗଠନର ପ୍ରଶ୍ନ ଉପରେ କଂଗ୍ରେସର ନୀତି ଏହାର ଏକ ଜ୍ୱଳନ୍ତ ଉଦାହରଣ ।

ଭାଷାଭିତ୍ତିରେ ପ୍ରଦେଶ ଗଠନ ଆମ ଜାତୀୟ ଆନ୍ଦୋଳନର ଏକ ମୂଳ ଦାବି ଥିଲା—କାରଣ କେବଳ ଏହାରି ଦ୍ୱାରହିଁ ଜାତୀୟ ଏକତା ଆହୁରି ଦୃଢ଼ ହେବ, ସାଧାରଣ ଲୋକେ ସରକାରୀ କାର୍ଯ୍ୟରେ ଭାଗ ନେବାକୁ ସକ୍ଷମ ହେବେ ଏବଂ ପ୍ରତ୍ୟେକ ଜାତିର ସାଂସ୍କୃତିକ ବିକାଶ ଯଥେଷ୍ଟ ସୁଗମ ହେବ । କିନ୍ତୁ ସ୍ୱାଧୀନତା ପ୍ରାପ୍ତିପରେ କଂଗ୍ରେସ ସରକାର ଏଗୁଡ଼ିକ ଭୁଲିଗଲେ ।

ଏପରିକି, ଜନମତର ଚାପରେ ବାଧ୍ୟ ହୋଇ ସରକାର ଯେତେବେଳେ ରାଜ୍ୟ ପୁନର୍ଗଠନ କମିସନ ବସାଇଲେ, ସେତେ-

ବେଳେ ମଧ୍ୟ ସରକାର ଏ ସମ୍ପର୍କରେ କୌଣସି ମତ ଉପସ୍ଥାପିତ କଲେ ନାହିଁ । ବିଭିନ୍ନ ପ୍ରଦେଶର କଂଗ୍ରେସୀ ନେତାମାନେ ସୀମା ସମ୍ପର୍କରେ ପଡ଼ୋଶୀ ରାଜ୍ୟ ଉପରେ ଅସମ୍ଭବ ଦାବୀମାନ କରି ଲୋକଙ୍କ ଭିତରେ ମାତ ପ୍ରାଦେଶିକତା ଓ ଘୃଣାର ବହ୍ନି ଜଳାଇଲେ । ଭାଷା ଭିତ୍ତିରେ ପ୍ରଦେଶ ଗଠନା ପାଇଁ ଜନସାଧାରଣଙ୍କ ଆନ୍ଦୋଳନକୁ ଆତଙ୍କ ଓ ବର୍ବରଦମନ ପ୍ରୟୋଗ କରି ଦବାଇ ଦେବାକୁ ଚେଷ୍ଟା କରାଗଲା ଏବଂ ପରେ ଜାତୀୟ ଏକତାକୁ ଦୃଢ଼ କରିବା ନାମରେ କଂଗ୍ରେସର ଉପର ନେତୃତ୍ୱ ପ୍ରଦେଶ ମିଶ୍ରଣର ପ୍ରସ୍ତାବ ବାଡ଼ିଲେ । ଏହି ପ୍ରସ୍ତାବ ଯଦି କାର୍ଯ୍ୟକାରୀ ହୋଇଥାନ୍ତା, ତେବେ ଲୋକଙ୍କ ଭିତରେ ଏହା ନାନା ପ୍ରକାର ବିବାଦ, ମନୋମାଳିନ୍ୟ ଓ ସଂଘର୍ଷ ସୃଷ୍ଟି କରିଥାଆନ୍ତା ।

ଆଜି ମଧ୍ୟ ମହାରାଷ୍ଟ୍ର ଓ ଗୁଜୁରାଟର ଜନସାଧାରଣଙ୍କ ଗଣତାନ୍ତ୍ରିକ ଦାବୀ ଗୃହୀତ ହୋଇପାରି ନାହିଁ । ଦ୍ୱିଭାଷୀ ପ୍ରଦେଶ ଗଠନର ଯୋଜନା ଯେଉଁ ଭାବରେ ପ୍ରସ୍ତୁତ ହେଲା ଏବଂ ଲୋକଙ୍କର ସମସ୍ତ ଅନିଚ୍ଛା ଓ ବିରୋଧ ସତ୍ତ୍ୱେ ଏହା ଯେପରି ଲଦି ଦିଆଗଲା ଏହା କଂଗ୍ରେସର ପ୍ରକୃତରୂପ ଦେଖାଇ ଦେଇଛି । ଏଇମାନେ ପୁଣି ଗଣତନ୍ତ୍ର ଓ ଅହିଂସା ସମ୍ପର୍କରେ ବଡ଼ବଡ଼ ବାଣୀ ପ୍ରଚାର କରନ୍ତି ।

ତ୍ରିପୁରା, ମଣିପୁର, ଦିଲ୍ଲୀ ଓ ହିମାଚଳ ପ୍ରଦେଶ ଆଦିରେ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ ପାଇଁ ଜନ ଦାବୀକୁ ଉପେକ୍ଷା କରାଗଲା ।

ଏହିସବୁ ମତ ଜାତୀୟ ଏକତାକୁ ସୁଦୃଢ଼ ନ କରି ଆହୁରି ଦୁର୍ବଳ କରି ଦେଉଛି ।

ଜାତିଭେଦ, ବର୍ଣ୍ଣ ବୈଷମ୍ୟ ଓ ସାଂପ୍ରଦାୟିକତା ବିରୋଧରେ ସକ୍ରିୟ ସଂଗ୍ରାମ କରିବାକୁ ଅଧିକାଂଶ ପ୍ରଦେଶରେ କଂଗ୍ରେସ ସଂଗଠନ ପୂରାପୂରି ଅସମର୍ଥ ଓ ନିଷ୍କ୍ରିୟ ହୋଇଛି । ଅନେକ ଅଞ୍ଚଳରେ କଂଗ୍ରେସ ଭିତରେ ମଧ୍ୟ ଜାତିଗତ ଭାବେ ଦଳାଦଳି ଦେଖାଦେଇଛି । କଂଗ୍ରେସର ଆଭ୍ୟନ୍ତରୀଣ ସାଙ୍ଗଠନିକ ପ୍ରଶ୍ନ ଉପରେ ଏବଂ ପ୍ରାର୍ଥୀ ବଛା ହେଲା ବେଳେ ବା ଚାକିରୀ ପାଇଁ ସୁପାରିଶ କଲାବେଳେ ଜାତି ଓ ସଂପ୍ରଦାୟର ବିଚାର ଅନେକ କାମ କରିଛି ।

ଜାତୀୟ ଏକତା ଦୃଢ଼ କରିବାପାଇଁ ଏବଂ ଗଣତନ୍ତ୍ରର ବିକାଶ ଲାଗି ତଫସିଲ ଜାତି ଓ ଆଦିବାସୀ ସଂପ୍ରଦାୟର ୭ କୋଟି ଜନ-ସାଧାରଣଙ୍କ ଅବସ୍ଥାର ଉନ୍ନତି ଆଣିବାକୁ ପଡ଼ିବ । ସମ୍ବିଧାନରେ ବହୁତ ପ୍ରତିଶ୍ରୁତି ଦିଆ ଯାଇଥିଲେ ମଧ୍ୟ ଏବଂ ଆଇନଗତ ଭାବେ ଅସ୍ପୃଶ୍ୟତାକୁ ଉଠାଇ ଦିଆଯାଇଥିଲେ ମଧ୍ୟ ଏ ଦିଗରେ ଖୁବ୍ କମ କାର୍ଯ୍ୟ କରାଯାଇଛି ।

ତଫସିଲ ଜାତିର ଲୋକମାନେ ସମାଜରେ ସବୁଠାରୁ ବେଶି ଦଳିତ, ଶୋଷିତ ଓ ନିପ୍ପେଷିତ ଅବସ୍ଥାରେ ପଡ଼ିଛନ୍ତି । ଏଇମାନେ ସବୁଠାରୁ ବେଶି ଦରିଦ୍ର ଓ ସାଂସ୍କୃତିକ କ୍ଷେତ୍ରରେ ସବୁଠାରୁ ପଛୁଆ । ଗ୍ରାମାଞ୍ଚଳରେ ଯେଉଁଠି ସେମାନେ ମୁଖ୍ୟତଃ କ୍ଷେତମଜୁରିଆ ହିସାବରେ କାମ କରନ୍ତି, ସେଠାରେ ସେମାନଙ୍କୁ ଭୂମିହୀନତା, କମ ମଜୁରୀ ଓ ବର୍ଷରେ ବହୁଦିନ ବେକାର ରହିବା ଆଦି ନାନା ଦୁର୍ଦ୍ଦଶା ସହିବାକୁ ପଡ଼େ ଏବଂ ସମସ୍ତ ସାମାଜିକ ସମ୍ମାନରୁ ଏମାନଙ୍କୁ ବଞ୍ଚିତ କରାଯାଏ ।

ଆଦିବାସୀମାନଙ୍କ ସଂପର୍କରେ ସରକାରୀ ମହଲରେ ସହାନୁ-ଭୂତି ମୂଳକ ଦୃଷ୍ଟିକୋଣର ସଂପୂର୍ଣ୍ଣ ଅଭାବ ରହିଛି । ବ୍ୟବସାୟୀ, ମହାଜନ ଓ ଜମିଦାରମାନଙ୍କ ଦ୍ୱାରା ଆଦିବାସୀମାନେ ସବୁବେଳେ

ଶୋଷିତ ହୁଅନ୍ତି । ଯେଉଁ ଅମଲାତାନ୍ତ୍ରିକ ହାକମ ଓ କର୍ମଚାରୀମାନଙ୍କ ଉପରେ ସେମାନଙ୍କ ଉନ୍ନୟନର ଯୋଜନା ଛାଡ଼ି ଦିଆଯାଇଛି, ସେଇମାନେ ଆଦିବାସୀମାନଙ୍କୁ ନାନା ଭାବରେ ପ୍ରବଞ୍ଚିତ କରନ୍ତି । ନାଗା ଅଞ୍ଚଳରେ ଆମର ସୈନ୍ୟ ବାହିନୀ, ଆମର ଲୋକମାନଙ୍କର ଏକ ଅଂଶ ବିରୁଦ୍ଧରେ ଏକ ଖଣ୍ଡ ଯୁଦ୍ଧରେ ବ୍ୟାପୃତ ଅଛନ୍ତି । ତା ଠାରୁ ବଳି ଶୋଚନୀୟ ପରିସ୍ଥିତି ଆଉ କଣ ହୋଇପାରେ ? ସରକାରଙ୍କ ଆଦିବାସୀ ନୀତିରେ ତ୍ରୁଟି ହିଁ ଏହି ଦୁଃଖଦାୟକ ପରିସ୍ଥିତିର ପ୍ରଧାନ କାରଣ ।

## କଂଗ୍ରେସର ଜନ ବିରୋଧୀ ନୀତି

ସବୁ ଦିଗରେ ଦେଶର ଅଗ୍ରଗତି ହୋଇଛି ବୋଲି କଂଗ୍ରେସ ଯେଉଁ ପ୍ରଚାର ଚଳାଇଛି, ବାସ୍ତବ ଘଟଣାବଳି ତାହା ଏକ ମିଥ୍ୟାଚାର ବୋଲି ପ୍ରମାଣିତ କରିଛି । ଏଠାରେ ସେଠାରେ, କେଉଁଠି ଟିକେ ସାମାନ୍ୟ ସୁବିଧା ହୋଇ ପାରିଥାଏ । କିନ୍ତୁ ଦେଶର ମୋଟା ମୋଟି ଚିତ୍ର ଦେଖିଲେ ଯାହା ସ୍ପଷ୍ଟ ହୁଏ, କଂଗ୍ରେସୀ ପ୍ରଚାରର ତା ଠିକ୍ ବିପରୀତ । ବ୍ୟାପକ ଅଗ୍ରଗତି କଥା ଦୂରରେ ଥାଉ ଦେଶର ସାମୂହିକ ଅଗ୍ରଗତି ପାଇଁ ମୂଳଦୁଆ ମଧ୍ୟ ଏପର୍ଯ୍ୟନ୍ତ ପଡ଼ି ନାହିଁ ।

ଜାତୀୟ ପୁନର୍ଗଠନ ପାଇଁ ଦେଶରେ ମହଜୁଦ ଥିବା ସମ୍ପଦ ଓ ଲୋକ ଶକ୍ତିର ପୂର୍ଣ୍ଣ ବିନିଯୋଗ ପାଇଁ ବାସ୍ତବ ଅବସ୍ଥାର ସୃଷ୍ଟି ହୋଇ ନାହିଁ । ଜନସାଧାରଣଙ୍କ ଏକତାକୁ ଏକ ବାସ୍ତବ ରୂପ ଦେବା ଦିଗରେ ବା ଜନସାଧାରଣଙ୍କ ଭିତରେ ଉତ୍ସାହ ଓ କର୍ମ ପ୍ରେରଣା ଆଣିଦେବା ଦିଗରେ କୌଣସି ବ୍ୟବସ୍ଥା କରାଯାଇନାହିଁ । ଏହା ନ କଲେ ଦେଶ ଗଠନର ଏଡ଼େ ବଡ଼ ଦାୟିତ୍ୱ କେବେ ପୂରଣ ହୋଇ ନ ପାରେ ।

ଏହା ଏକ ଆକସ୍ମିକ ଘଟଣା ନୁହେଁ । ଏକଥା ମଧ୍ୟ ସତ୍ୟ ନୁହେଁ ଯେ ଏହା ମଣିଷର ଆୟତ୍ତର ବାହାରେ । ଏହି ଯେଉଁ ଦୁରବସ୍ଥା ଦେଖା ଦେଇଛି ତାର ପ୍ରଧାନ କାରଣ ହେଉଛି ଆଭ୍ୟନ୍ତରୀଣ କ୍ଷେତ୍ରରେ ସରକାର ଯେଉଁ ଜନ ବିରୋଧୀ ନୀତି ନେଇ ଆସିଛନ୍ତି ।

ବିଦେଶୀ ପୁଞ୍ଜିକୁ ଜାତୀୟକରଣ ନ କରି ସେଥିପ୍ରତି ଏକ ଆପୋଷ ମନୋଭାବ ନେବା ସରକାରଙ୍କ ଏକ ମୂଳ ନୀତି ହୋଇଛି । ସରକାରଙ୍କ ନୀତି ହୋଇଛି, ବଡ଼ ବଡ଼ ଶିଳ୍ପପତିଙ୍କ ସ୍ୱାର୍ଥକୁ ରକ୍ଷା କରିବା, ସେମାନଙ୍କର ଋଣକୁ ଗ୍ରହଣ କରି ନେବା ଓ ସେମାନଙ୍କ ମୁନାଫାଖୋର ମନୋଭାବ ଉପରେ ବିଶ୍ୱାସ ରଖିବା । ସରକାରଙ୍କ ନୀତି ହୋଇଛି ପ୍ରଗତିଶୀଳ ଓ ମୌଳିକ କୃଷି ସଂସ୍କାରକୁ ବିରୋଧ କରି ଜମିଦାରମାନଙ୍କୁ ସବୁ ପ୍ରକାର ସୁବିଧା ଦେବା । ଟିକସ ଆଦାୟରେ ସମାନୁପାତିକ ପଦ୍ଧତି (Equitable system)କୁ ଗ୍ରହଣ ନକରି ସାଧାରଣଙ୍କ ଉପରେ ଟିକସର ପ୍ରଧାନ ବୋଝ ଲଦିଦେବା ସରକାରୀ ନୀତି ହୋଇଆସିଛି । ସରକାରଙ୍କ ନୀତି ହୋଇଛି ମୁହଁରେ ସାମ୍ୟବାଦର ବଡ଼ ବଡ଼ ବାଣୀ ଉଚ୍ଚାରଣ କରି କାର୍ଯ୍ୟରେ ବିତ୍ତବାନ ଲୋକଙ୍କ ହାତରେ ଅଧିକ ଧନ ଠୁଳ କରିବା । ଶ୍ରମିକ, କୃଷକ, କାରିଗର, ମଧ୍ୟବିତ୍ତ, କର୍ମଚାରୀ, ଶିକ୍ଷକ ଓ ଖୁଚୁରା ବ୍ୟବସାୟୀ ମାନଙ୍କ ସମସ୍ତ ଦାବୀ ଓ ପ୍ରୟୋଜନ ପ୍ରତି କୌଣସି ଭ୍ରୂକ୍ଷେପ ନକରିବା ବା କାନ ନ ଦେବା ସରକାରଙ୍କର ଏକ ପ୍ରଧାନ ନୀତି ହୋଇ ଆସିଛି ।

## ଗଣତନ୍ତ୍ରର କଣ୍ଠରୋଧ

ନାଗରିକ ସ୍ୱାଧୀନତା ଉପରେ ଆକ୍ରମଣ କରିବା, ଗଣତନ୍ତ୍ରକୁ ସୀମିତ କରିବା ଓ ମନମୁଖୀ ଶାସନ ଜାରିକରିବା ସରକାରୀ ନୀତିର ଅବଶ୍ୟମ୍ଭାବୀ ପରିଣତି ।

ଠିକ୍ ଆଗପରି ଲୋକଙ୍କର ସ୍ୱାଧୀନତାକୁ ପୋଲିସ୍ ଓ ଅମଲାତନ୍ତ୍ରର ପଦତଳେ ଦଳି ଦିଆଯାଉଛି । ଜୀବନ ଧାରଣ ଅବସ୍ଥାର ଉନ୍ନତି ପାଇଁ ପ୍ରତ୍ୟେକ ସଂଗ୍ରାମକୁ, ଜନସାଧାରଣଙ୍କର ପ୍ରତ୍ୟେକ ଆନ୍ଦୋଳନକୁ ସରକାର ଲାଠିଗୁଳି ନେଇ ସାମନା କରୁଛନ୍ତି । ଦେଖିବା ମାତ୍ରକେ ଗୁଳି କରିବାର ଆଦେଶ ଦିଆ ଯାଉଛି । ସରକାର ତରଫରୁ ବମ୍ବେ ଓ ଅହମଦାବାଦରେ ଯେଉଁ ବିଭତ୍ସ, ପାଶବିକ ହତ୍ୟାକାଣ୍ଡ ଘଟିଲା, ତାହାର ଦାଗ ଲୋକଙ୍କ ମନରେ ଏବେ ବି ରହିଛି । ଯେଉଁଠି ରକ୍ତପାତ ହେଉଛି, ସମସ୍ତ ଦୋଷକୁ ଲୋକଙ୍କ ଉପରେ ଲଦି ଦିଆଯାଉଛି । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଘଟଣା ଠିକ ଏହାର ଓଲଟା କଥା ପ୍ରମାଣ କରେ । ଜନ ସାଧାରଣଙ୍କ ଚାପରେ ନିତାନ୍ତ ବାଧ୍ୟ ହୋଇ ଖୁବ ଅଳ୍ପ କେତୋଟି ସ୍ଥାନରେ ବିଚାର ବିଭାଗୀୟ ତଦନ୍ତ ନିଯୁକ୍ତ ହୋଇଛି । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଏ ପ୍ରକାର ବିଚାର ବିଭାଗୀୟ ତଦନ୍ତ ମଞ୍ଜୁର କରିବାକୁ ସରକାରଙ୍କ ଅପରାଧୀ ବିବେକ ପ୍ରସ୍ତୁତ ହେଉନାହିଁ ।

ସାମାନ୍ୟ କଥାରେ ସଭା ଶୋଭାଯାତ୍ରା ଆଦିକୁ ନିଷେଧ କରା-ଯାଉଛି । ଗଣ ଆନ୍ଦୋଳନକୁ ଦମନ କରିବାପାଇଁ ଅଟକବନ୍ଦୀ ଆଇନ ବ୍ୟବହୃତ ହେଉଛି । କେତେକ ସ୍ଥାନରେ ବର୍ଷ ବର୍ଷ ଧରି ଶୋଭାଯାତ୍ରାକୁ ନିଷେଧ କରାଯାଉଛି । କଂଗ୍ରେସ ଶାସନକୁ ରାଜ-ନୈତିକ ଭାବେ ବିରୋଧ କରୁଥିବା ଅସଂଖ୍ୟ କୃଷକ ସଭା ଓ ଟ୍ରେଡ ୟୁନିଅନ କର୍ମୀ ଓ ବହୁ ସାଧାରଣ ଶ୍ରମିକ, କୃଷୀଙ୍କ ବିରୁଦ୍ଧରେ ହଜାର ହଜାର ଅପରାଧ ମୋକଦ୍ଦମା ଯୋଡ଼ା ଯାଉଛି । ରାଷ୍ଟ୍ରାୟତ୍ତ ଅନେକ ଶିଳ୍ପରେ ମଧ୍ୟ ଛଟେଇ କରି, ଭୟ ଦେଖାଇ ଓ ଭେଦଭାବ ସୃଷ୍ଟି କରି ଟ୍ରେଡ୍ ୟୁନିଅନର ସାଧାରଣ କାର୍ଯ୍ୟରେ ମଧ୍ୟ ବାଧା ସୃଷ୍ଟି କରାଯାଉଛି ।

# ମନମୁଖୀ ଶାସନର ବୃଦ୍ଧି

ଶାସନର ବିଭିନ୍ନ କ୍ଷେତ୍ରରେ ମନମୁଖୀ ପଣିଆ ବଢ଼ିଚାଲିଛି । କେବଳ ନିଜର ସଂକୀର୍ଣ୍ଣ ସ୍ୱାର୍ଥକୁ ଶାସକ ଶ୍ରେଣୀ ସାରା ଦେଶ ଓ ଜାତିର ସ୍ୱାର୍ଥ ବୋଲି ମନେ କରୁଛି । ଦେଶର ରାଜନୈତିକ ଜୀବନ ପାଇଁ ଏହା ଏକ ଭୟାବହ ବିପଦ ।

କ୍ଷମତାର ନିଶାରେ ଅନ୍ଧ ହୋଇ ଶାସକ ଶ୍ରେଣୀ ଜନସାଧାରଣଙ୍କ ପ୍ରତିବାଦ ପ୍ରତି କୌଣସି ଭ୍ରୂକ୍ଷେପ କରୁ ନାହିଁ ଏବଂ ଅଧିକାଂଶ କ୍ଷେତ୍ରରେ ଗଣତାନ୍ତ୍ରିକ ରୀତି ବା ପନ୍ଥା ପ୍ରତି ସଂପୂର୍ଣ୍ଣ ଅସମ୍ମାନ ପ୍ରଦର୍ଶନ କରୁଛି ।

ଲକ୍ଷ ଲକ୍ଷ ଜୀବନ ସଙ୍ଗେ ଜଡ଼ିତ ପ୍ରଧାନ ପ୍ରଧାନ ଜାତୀୟ ପ୍ରଶ୍ନଗୁଡ଼ିକ କେବଳ କଂଗ୍ରେସ ଦଳର ଗୃହକାନ୍ଥ ଭିତରେ ନିଷ୍ପତ୍ତି ହେଉଛି ଏବଂ ଲୋକ ଦେଖାଣିଆ ଭାବରେ ବିଧାନସଭାରେ ଆଗତ ହୋଇ ତଥାକଥିତ ସଂଖ୍ୟା ଗରିଷ୍ଠତା ଦ୍ୱାରା ଗୃହୀତ ହୋଇ ଯାଉଛି ।

କଂଗ୍ରେସ ମନ୍ତ୍ରୀମାନେ ନିଜ ସରକାରୀ କ୍ଷମତାର ଅପବ୍ୟବହାର କରୁଛନ୍ତି, ସର୍ବସାଧାରଣ ପାଣ୍ଠିକୁ ନିଜ ଦଳର ସ୍ୱାର୍ଥରେ ଅପଖର୍ଚ୍ଚ କରୁଛନ୍ତି ଏବଂ ନିର୍ବାଚନରେ କଂଗ୍ରେସକୁ ସମର୍ଥନ କରିବାକୁ ସର୍ବସାଧାରଣ ସଙ୍ଗଠନ ଓ କର୍ମଚାରୀମାନଙ୍କ ଉପରେ ଚାପ ପକାଉଛନ୍ତି । ଏପରିକି ବନ୍ୟା ବା ଦୁର୍ଭିକ୍ଷ ଆଦି ଦୁର୍ବିପାକବେଳେ ଜନସାଧାରଣଙ୍କ ଆବଶ୍ୟକତା ଅପେକ୍ଷା ସଂକୀର୍ଣ୍ଣଦଳ ସ୍ୱାର୍ଥପ୍ରତି ବେଶି ନଜର ଦିଆଯାଉଛି । ଅନ୍ୟାନ୍ୟ ଦଳର ସହଯୋଗକୁ ଗ୍ରହଣ କରାଯାଉ ନାହିଁ ଏବଂ ମାନବିକ ଦୁର୍ଦ୍ଦଶାକୁ ନିଜର ରାଜନୈତିକ ସ୍ୱାର୍ଥ ପାଇଁ ବ୍ୟବହାର କରାଯାଉଛି । ଜାତୀୟ ପୁନର୍ଗଠନର ଯୋଜନା ପାଇଁ ମହଜୁଦ ଥିବା ପାଣ୍ଠିରୁ

କଂଗ୍ରେସର ସମର୍ଥକ ଓ ସ୍ଥାନୀୟ କଂଗ୍ରେସ ନେତାଙ୍କ ବନ୍ଧୁବାନ୍ଧବମାନଙ୍କୁ ସାହାଯ୍ୟ କରିବାରେ ବା ଗୃହକର୍ମ ଯୋଗାଇବା ଆଦିରେ ଖର୍ଚ୍ଚ କରାଯାଉଛି । ଏହା ଫଳରେ ସମାଜ ଓ ସାଧାରଣ ଜୀବନର ନୈତିକତା ଉପରେ ଭ୍ରଷ୍ଟାଚାର ହେଉଛି ।

ଶାସନକଳ ସହିତ ନିବିଡ଼ ଯୋଗାଯୋଗ ଥିବାରୁ ସରକାରୀ ଅନୁଷ୍ଠାନଗୁଡ଼ିକ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଥିବାରୁ, ଅନେକ ସ୍ଥାନରେ ସ୍ଥାନୀୟ କଂଗ୍ରେସ ନେତାମାନେ ପାଖାପାଖି ଅନ୍ଧାରୀ ରାଜୁତି ଚଳାଇଛନ୍ତି । କୌଣସି ସମାଲୋଚନା ପ୍ରତି ଭ୍ରୂକ୍ଷେପ କରାଯାଉନାହିଁ । ଜନସାଧାରଣଙ୍କ ଗଣତାନ୍ତ୍ରିକ ଅଧିକାର ଗୁଡ଼ିକ ପ୍ରତି ଆଖି ବୁଜି ଦିଆଯାଉଛି ଓ ଗଣତାନ୍ତ୍ରିକ ଅନୁଷ୍ଠାନ ଗୁଡ଼ିକର ବିକାଶ ପଥରେ ସମସ୍ତ ବାଧା ସୃଷ୍ଟି କରାଯାଉଛି । ଯେଉଁସବୁ ସଚ୍ଚୋଟ କର୍ମଚାରୀ ଏସବୁ ଅପକର୍ମ ସହିତ ସହଯୋଗ କରୁନାହାନ୍ତି, ସେମାନଙ୍କୁ ନାନାଭାବରେ ହଇରାଣ କରାଯାଉଛି ।

ପ୍ରତିକ୍ରିୟାଶୀଳ ଜମିଦାର ଯେଉଁମାନେ କି ସାରା ଜୀବନଧରି ଜାତୀୟ ଆନ୍ଦୋଳନର ବିରୋଧକରି ଆସିଥିଲେ, ସେମାନେ ବହୁ ଅଞ୍ଚଳରେ ଆଜ କଂଗ୍ରେସର ବଡ଼ପଣ୍ଡା ସାଜିଛନ୍ତି । ନିଜ ନିଜର ଭାଇବନ୍ଧୁ କୁଟୁମ୍ବ ନେଇ ବଡ଼ବଡ଼ ପୁଞ୍ଜିପତିମାନେ ଓ ପ୍ରଥମ ନମ୍ବର ସ୍ୱାର୍ଥାନ୍ୱେଷୀ ଲୋକମାନେ ବହୁ ସ୍ଥାନରେ କଂଗ୍ରେସ ସଙ୍ଗଠନକୁ ଅକ୍ତିଆର କରିବାକୁ ଆଗେଇ ଆସିଛନ୍ତି । ସେମାନେ କଂଗ୍ରେସର ସମ୍ମାନ ଓ କର୍ତ୍ତୃତ୍ୱକୁ ନିଜ ନିଜର ସ୍ୱାର୍ଥସିଦ୍ଧିରେ ଲଗାଉଛନ୍ତି ଓ ନେତୃତ୍ୱ ପଦବୀ ପାଇଁ ନିଜ ନିଜ ଭିତରେ କଳହ ସୃଷ୍ଟି କରୁଛନ୍ତି । ସଚ୍ଚୋଟ ଓ ପୁରୁଖା କଂଗ୍ରେସ କର୍ମୀମାନେ ଦେଶସେବାରେ ଯେଉଁମାନଙ୍କର ମୁଣ୍ଡବାଳ ଧୋଠ ହୋଇଯାଇଛି, ସେମାନଙ୍କୁ ଆଜ ଏଇ ନୂଆ ଧଳା ଟୋପୀପିନ୍ଧାଳମାନେ ଆଡ଼େଇ

ଦେଉଛନ୍ତି । ସଚ୍ଚୋଟ ଶାସନ ଓ ଜନସେବା ପାଇଁ ସେମାନଙ୍କର କାକୁତି ଆଜି କଂଗ୍ରେସ ନେତାଙ୍କ କାନରେ ବାଜୁନାହିଁ ।

ଏପରି ଏକ ଅବସ୍ଥାରେ ବ୍ୟବସ୍ଥାସଭାରେ ପ୍ରଗତିଶୀଳ କର୍ମପନ୍ଥା ସବୁ ମଞ୍ଜୁର ହୋଇଗଲେ ବି ତାହା କାର୍ଯ୍ୟକାରୀ ହୋଇ ପାରୁନାହିଁ । ଏପରିକି ଯେଉଁସବୁ ଦାବୀ ଓ ଅଧିକାର ଜନସାଧାରଣ ହାସଲ କରିଛନ୍ତି, ସେଗୁଡ଼ିକ ଖାଲି କାଗଜ କଲମରେ ରହିଯାଉଛି । ଲୋକମାନଙ୍କର ଅଭାବ ପୂରଣ ପାଇଁ ଯେଉଁସବୁ ମଞ୍ଜୁରୀ ମିଳୁଛି ସେଗୁଡ଼ିକ କାର୍ଯ୍ୟକାରୀ ହୋଇ ପାରୁନି ।

ଶାସନରେ ମନମୁଖୀ ପଣିଆ ବଢ଼ି ଯାଇଥିବାରୁ ପ୍ରତ୍ୟେକ ବିଭାଗ ଓ ପ୍ରତ୍ୟେକଟି ଅଞ୍ଚଳ ଦୁର୍ନୀତିରେ ଭରପୂର ହୋଇଯାଇଛି । ଏହି ଦୁର୍ନୀତି କପରି ବଢ଼ି ଚାଲିଛି, ଜନସାଧାରଣଙ୍କ ଟଙ୍କା ଓ ପାଣ୍ଠିର କପରି ଅପବ୍ୟୟ ଓ ଲୁଟ ହେଉଛି ସେ ସମ୍ପର୍କରେ ବିଭିନ୍ନ କମିସନ ଅନେକ ବିବରଣୀ ଦେଇଛନ୍ତି । କିନ୍ତୁ ଏସବୁ ପ୍ରତି କେହି କର୍ଣ୍ଣପାତ କରୁନାହାନ୍ତି ।

କଂଗ୍ରେସ ପ୍ରାର୍ଥୀ ବଣ୍ଟା ହେଲାବେଳେ ନିଜ ନିଜ ଭିତରେ ଯେଉଁପ୍ରକାର ଦୋଷାରୋପର ପାଲା ଚାଲିଲା, ସେଥିରୁ ଆଜି ଏହା ଅତି ପରିଷ୍କାର ହୋଇଛି ଯେ କଂଗ୍ରେସ ସଙ୍ଗଠନ ଭିତରେ କି ପ୍ରକାର ଅବସ୍ଥା ରହିଛି । ଏହି ପ୍ରକାର ଏକ ସଙ୍ଗଠନ ଯେତେବେଳେ କ୍ଷମତାର ଏକଚାଟିଆ ଅଧିକାର ପାଇଛି, ସେତେବେଳେ ସାଧାରଣ ଜୀବନ କଳୁଷିତ ହେବାକୁ ବାଧ ହେବ ।

ସ୍ଥାନୀୟ ଓ ଆଞ୍ଚଳିକ ସ୍ୱାୟତ୍ତଶାସନ, ଯାହା କି ଦେଶର ଉନ୍ନତି ପାଇଁ, ଗଣତନ୍ତ୍ରର ବିକାଶ ପାଇଁ ଓ ଲୋକମାନଙ୍କ ଭିତରେ କର୍ମ ପ୍ରେରଣା ଆଣି ଦେବା ପାଇଁ ଏକ ପ୍ରଧାନ ଭୂମିକା ନିଅନ୍ତା, ତାହା ଆଜି ଏକ ନିତାନ୍ତ ମୁମୂର୍ଷୁ ଅବସ୍ଥାରେ ଅଛି । ଅଧିକାଂଶ

ସ୍ଥାନରେ କଂଗ୍ରେସର ସହଯୋଗରେ ସଂପତ୍ତିଶାଳୀ ଓ ଧନୀ ଲୋକ-ମାନେ ଏଗୁଡ଼ିକୁ ଦଖଲ କରି ବସିଛନ୍ତି । ଆମ ଦେଶର ସାଧାରଣ ଜୀବନରେ ଆଜ ଯେଉଁ ଦୁର୍ନୀତି, ଅମଲାତନ୍ତ୍ର ଓ ନୀତିହୀନତା ଦେଖାଦେଇଛି, ବହୁ ସମୟରେ ଏହି ପ୍ରକାର ଅନୁଷ୍ଠାନ ଗୁଡ଼ିକର କ୍ରିୟା କଳାପରେ ତାହା ଅତି ବୀଭତ୍ସ ଭାବରେ ପ୍ରକାଶ ପାଉଛି । ବହୁତ ସମୟରେ ଏ ଅନୁଷ୍ଠାନ ଗୁଡ଼ିକ ହାତରେ ଆବଶ୍ୟକୀୟ କ୍ଷମତା, କର୍ତ୍ତୃତ୍ୱ ଓ ପାଣ୍ଠି ମହଜୁତ ରହୁ ନାହିଁ । ଉପରେ ନିଯୁକ୍ତ ହୋଇଥିବା କର୍ମଚାରୀମାନେ ସର୍ବେସର୍ବା ହେଉଛନ୍ତି । ଶାସକ ଶ୍ରେଣୀର ସଂକୀର୍ଣ୍ଣ ସ୍ୱାର୍ଥକୁ ରକ୍ଷା କରିବା ପାଇଁ ଓ ଲୋକଙ୍କ ଉପରେ ନୂଆ ବୋଝ ଲଦିବାକୁ ଏଗୁଡ଼ିକୁ ହତିଆରରୂପେ ବ୍ୟବହାର କରା ଯାଉଛି । ଗଣତାନ୍ତ୍ରିକ ନୀତି ପ୍ରତି କୌଣସି ଭ୍ରୂକ୍ଷେପ କରା ନ ଯାଇ ଏ ପକାର ଅନୁଷ୍ଠାନ ଗୁଡ଼ିକୁ ବେଳେ ବେଳେ ଭାଙ୍ଗି ଦିଆଯାଉଛି ।

## ଦ୍ୱିତୀୟ ଯୋଜନାରୁ ବେଶିକିଛି ଆଶା କରିବା ବୃଥା

ସରକାରଙ୍କ ଏହି ପ୍ରକାର ନୀତି ଓ କାର୍ଯ୍ୟପନ୍ଥା ବିରୁଦ୍ଧରେ ଜନସାଧାରଣଙ୍କ ଭିତରେ ଗଭୀର ଅସନ୍ତୋଷ ବଢ଼ିବାରେ ଲାଗିଛି । କେବଳ ଗଣତାନ୍ତ୍ରିକ ବିରୋଧୀଦଳ ପଛରେ ଥିବା ଜନସାଧାରଣଙ୍କ ଭିତରେ ସୀମାବଦ୍ଧ ନ ରହି କଂଗ୍ରେସକୁ ଅନୁସରଣ କରୁଥିବା ବହୁ ଜନସାଧାରଣ ଓ ସଚ୍ଚୋଟ କଂଗ୍ରେସ ଲୋକଙ୍କ ଭିତରେ ମଧ୍ୟ ଏ ଅସନ୍ତୋଷ ଦେଖା ଦେଇଛି । ସାରା ଦେଶବ୍ୟାପୀ ଅସଂଖ୍ୟ ଜନ ଆନ୍ଦୋଳନ ଓ ଗଣବିକ୍ଷୋଭରେ ଏହା ପ୍ରକାଶ ପାଇଛି । କଂଗ୍ରେସ-ଦଳ ଭିତରେ ମଧ୍ୟ ବିଭିନ୍ନ ନୀତି ଉପରେ ଯେଉଁ ଦ୍ୱନ୍ଦ ଓ ବିବାଦ ଦେଖା ଦେଇଛି ତାହା ଏହି ଅସନ୍ତୋଷର ଅନ୍ୟତମ ପ୍ରକାଶ ମାତ୍ର ।

ଗତ କେଇବର୍ଷର ଅଭିଜ୍ଞତା ସରକାରୀ ନୀତିରେ ଏକ ମୌଳିକ ପରିବର୍ତ୍ତନ ଆଣିବ ବୋଲି ଯେଉଁମାନେ ଆଶା କରିଥିଲେ

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ସେମାନଙ୍କୁ ପୂର୍ବାପର ହତାଶ କରିଛି । ଦ୍ୱିତୀୟ ଯୋଜନାରେ ଘୋଷଣା କରାଯାଇଥିବା ଲକ୍ଷ୍ୟ ଓ ଆଦର୍ଶ ହୁଏତ ମହତ ଓ ପ୍ରଶଂସନୀୟ ; ଏହାର କେତେକ ପ୍ରସ୍ତାବ ମଧ୍ୟ ଜନସାଧାରଣଙ୍କ ପକ୍ଷେ ହିତକର, କିନ୍ତୁ ଏହି ଯୋଜନାରେ ସ୍ଥାନ ପାଇଥିବା ପ୍ରଧାନ ପ୍ରଧାନ ନୀତି ଓ କାର୍ଯ୍ୟସୂଚୀ ଯୋଜନାର ମହତ୍ ଲକ୍ଷ ପୂରଣ ବାଟରେ ସବୁ ପ୍ରକାର ବାଧା ସୃଷ୍ଟି କରିବ ।

ବଳିଷ୍ଠ ପୁଂଜିକୁ ଆମ ଅର୍ଥନୀତିର କେନ୍ଦ୍ରସ୍ଥଳୀ ଗୁଡ଼ିକରୁ ଉଚ୍ଛେଦ କରିବାପାଇଁ ଏହି ଯୋଜନାରେ କୌଣସି ପ୍ରସ୍ତାବ ନାହିଁ । ରାଷ୍ଟ୍ରୀୟ ଶିଳ୍ପର ପ୍ରସାର ନିମନ୍ତେ ହୋଇଥିବା ପ୍ରସ୍ତାବ ଗୁଡ଼ିକ ନିହାତି ଅଧାପନ୍ତରିଆ । ମୋଟା ବ୍ୟବସାୟୀମାନଙ୍କୁ ସୁଯୋଗ ଦେବାପାଇଁ ଏଥିରେ ଯେଉଁ ପ୍ରସ୍ତାବ ଅଛି, ତାହା ଫଳରେ ବେସରକାରୀ ଘରୋଇ ଶିଳ୍ପ ଆମର ଶିଳ୍ପ ଜୀବନରେ କର୍ତ୍ତୃତ୍ୱ ବିସ୍ତାର କରିବ ।

ଯନ୍ତ୍ରପାତି ତିଆରି କରିପାରୁଥିବା ଓଜନଦାର ଶିଳ୍ପପାଇଁ ଖର୍ଚ୍ଚର ଯେଉଁ ବ୍ୟବସ୍ଥା ଅଛି ତାହା ଆଶାନୁରୂପ ନୁହେଁ । ଅନ୍ୟ ପକ୍ଷରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଉତ୍ପନ୍ନ କରୁଥିବା ବଡ଼ ଶିଳ୍ପପାଇଁ ଯଥେଷ୍ଟ ବେଶୀ ପରିମାଣରେ ବ୍ୟୟର ବ୍ୟବସ୍ଥା ରହିଛି । ଏଥିରୁ ବେଶୀ ଭାଗ ଯନ୍ତ୍ରପାତିର ଉନ୍ନତିରେ ବ୍ୟୟିତ ହେବ । ଯାହା ଫଳରେ କି ଛଟେଇ ଓ ବେକାରୀ ଆହୁରି ସାଙ୍ଘାତିକ ଆକାର ଧାରଣ କରିବ । ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ବୃଦ୍ଧିତ ଚାହିଦା ମେଣ୍ଟାଇବା ବାଟରେ ଶିଟା ଯୋଜନାର ପ୍ରସ୍ତାବ ଅନେକଟା ନିର୍ଭୁଲ ଓ ଯଥାର୍ଥ ଥିଲା । ରହିଥିବା ଶିଳ୍ପଗୁଡ଼ିକୁ କାମରେ ଲଗାଇ ଏବଂ ବହୁସଂଖ୍ୟକ ଲୋକଙ୍କ ଜୀବିକାର ଅବଲମ୍ବନ କୁଟୀରଶିଳ୍ପର ଉନ୍ନତି ସାଧନ କରିବାଦ୍ୱାରା ଏହା ସମ୍ଭବ ହୋଇପାରିବ ବୋଲି ଶିଟା ଯୋଜନାରେ

ଉଲ୍ଲେଖ ଥିଲା । କିନ୍ତୁ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ଏହି ପ୍ରସ୍ତାବ କାର୍ଯ୍ୟତଃ ବାଦ ପଡ଼ିଯାଇଛି ।

ମୌଳିକ ଭୂମିସମସ୍ୟା ସମ୍ପର୍କରେ ସରକାରୀ ନୀତି ବିଶେଷ-ଭାବରେ ଜମିମାଲିକ ସ୍ୱାର୍ଥଦ୍ୱାରା ପ୍ରଭାବିତ । ଚାଷୀ ଜମିର ମାଲିକ ହେଉ—ଏହି ମୂଳ ଦାବୀକୁ ୧୯୪୯ର କଂଗ୍ରେସର କୃଷିସଂସ୍କାର କମିଟି ଗ୍ରହଣ କରିଥିଲା । ଦ୍ୱିତୀୟ ଯୋଜନାରେ ଏହି ନୀତି ଅନୁସୃତ ହୋଇ ନାହିଁ । ଜଣପିଛି ଜମିର ସର୍ବୋଚ୍ଚ ହାର ସ୍ଥିର କରିବା ପ୍ରଶ୍ନ ଉପରେ ଜମିମାଲିକମାନଙ୍କୁ ଏପରି ସୁବିଧା ଦିଆଯାଇଛି ଯେ ଏହା କାର୍ଯ୍ୟକାରୀ ହେଲେ ମଧ୍ୟ ବଣ୍ଟନ ପାଇଁ ଖୁବ୍ କମ ଜମି ରହିବ । ଜମିର ସର୍ବୋଚ୍ଚ ପରିମାଣ ସ୍ଥିର କରିବାର ପ୍ରଶ୍ନଟିକୁ ପୂରାପୂରି ରାଜ୍ୟ ସରକାରମାନଙ୍କ ହାତରେ ଛାଡ଼ି ଦିଆଯାଇଛି । ଏମାନଙ୍କ ମଧ୍ୟରୁ ଅନେକ ଅତୀତରେ ଏ ପ୍ରସ୍ତାବକୁ ବିରୋଧ କରିଥିଲେ ଓ ଏହାକୁ କାର୍ଯ୍ୟକାରୀ କରିବେ ନାହିଁ ବୋଲି ସ୍ପଷ୍ଟ ଘୋଷଣା କରିଥିଲେ । ଜମିର ଅନ୍ୟାୟ ହସ୍ତାନ୍ତରକୁ ରୋକିବା ପାଇଁ, ଉଚ୍ଛେଦ ବନ୍ଦ କରିବା ପାଇଁ ଓ ଉଚ୍ଛେଦ ହୋଇଥିବା ଚାଷୀ ହାତରେ ଜମି ଫେରାଇ ଦେବା ପାଇଁ ଏ ଯୋଜନାରେ କୌଣସି ଫଳପ୍ରଦ ବ୍ୟବସ୍ଥା ନାହିଁ ।

ଏହି ଯୋଜନାରେ ପୁଂଜିପତିମାନେ ସେମାନଙ୍କ ମନଇଚ୍ଛା ଶୋଷଣକୁ ଚାଲୁ ରଖିବା ପାଇଁ ସମସ୍ତ ସୁବିଧା ପାଇଥିଲେ ମଧ୍ୟ ମଜୁରୀ ବୃଦ୍ଧି ପାଇଁ ଶ୍ରମିକ ଶ୍ରେଣୀର ଦାବୀକୁ ଏହା କାର୍ଯ୍ୟତଃ ଉପେକ୍ଷା କରିଛି ।

ଦ୍ୱିତୀୟ ଯୋଜନାରେ ସମାଜମଙ୍ଗଳ କାର୍ଯ୍ୟପାଇଁ ଖର୍ଚ୍ଚର ବ୍ୟବସ୍ଥାକୁ ବଢ଼େଇ ଦିଆଯାଇଛି । ତଥାପି ପ୍ରୟୋଜନ ତୁଳନାରେ ଏହା ଯଥେଷ୍ଟ ନୁହେଁ । ଅଧିକନ୍ତୁ ଶାସନ ବ୍ୟବସ୍ଥାରେ ଗଣତାନ୍ତ୍ରିକ

ପନ୍ଥାର ସ୍ଥାନ ନ ଥିବାରୁ ଏହି ଅର୍ଥର ଯେ ଉପଯୁକ୍ତ ସଦ୍‌-ବ୍ୟବହାର ହେବ, ଏ କଥା କେହି କହି ପାରିବେ ନାହିଁ ।

ଏହି ଯୋଜନା ପାଇଁ ଅର୍ଥ ସଂଗ୍ରହର ଗୁରୁତ୍ୱ ପୂର୍ଣ୍ଣ ପ୍ରଶ୍ନ ଉପରେ ସରକାରୀ ନୀତି ପ୍ରମାଣ କରୁଛି ଯେ ସମାଜବାଦୀ ଲକ୍ଷ ପାଇଁ ଓ ଜନତାର ମଙ୍ଗଳ ପାଇଁ ସରକାରଙ୍କ ତଥାକଥିତ ବ୍ୟାକୁଳତା ଛଳନା ଛଡ଼ା ଆଉ କିଛି ନୁହେଁ । ଏ ସମ୍ବନ୍ଧରେ ଯୋଜନାରେ ଯେଉଁ ପ୍ରସ୍ତାବ ରହିଛି ଏବଂ ଏହା ଯେପରି ଭାବରେ କାର୍ଯ୍ୟକାରୀ ହେବାକୁ ଆରମ୍ଭ କଲାଣି ସେଥିରେ ନ୍ୟାୟ ବା ମମତାର ସମସ୍ତ ନୀତିକୁ ଜଳାଞ୍ଜଳି ଦିଆଯାଇଛି । ଅର୍ଥନୀତି ଦିଗରୁ ବିଚାର କଲେ ମଧ୍ୟ ଏହା ପୂରାପୂରି ଏକ ଭୁଲ ବାଟ ।

ଜନସାଧାରଣଙ୍କ ଝାଳବୁହା ଶ୍ରମ ଉପରେ କୋଟି କୋଟି ଟଙ୍କାର ମାଲିକ ହୋଇ ଯେଉଁ ସବୁ ଶ୍ରେଣୀ ଓ ଗୋଷ୍ଠୀ ରହିଛନ୍ତି, ସେମାନଙ୍କଠାରୁ ଯୋଜନାର ସମସ୍ତ ବ୍ୟୟ ଉଠାଇବାକୁ କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟ ଗଣତାନ୍ତ୍ରିକ ଦଳମାନେ ପ୍ରସ୍ତାବ କରିଥିଲେ । କିନ୍ତୁ ସେମାନଙ୍କର ଏହି ପ୍ରସ୍ତାବକୁ ନାକଚ କରି ଦିଆଯାଇଛି । ଆଜି ଯେଉଁ ସାଧାରଣ ଲୋକ ଟିକସ ଓ ଋଣ ଆଦି ଭାରରେ ତଳି-ତଳାନ୍ତ ହେଉଛନ୍ତି, ଏହି ବ୍ୟୟର ଅଧିକାଂଶ ଭାର ତାରି ଉପରେ ପୁଣି ଲଦି ଦିଆଯାଇଛି । ଏହା ସାଙ୍ଗକୁ ଏକ ନଅଣ୍ଟିଆ ଅର୍ଥ ବ୍ୟବସ୍ଥା ଗୃହୁଲରଖିବାକୁ ସ୍ଥିର କଲେ, ତାର ପରିଣତି ବଡ଼ ଭୟାବହ ହେବ; ଜିନିଷପତ୍ରର ଦରଦାମ ହୁ ହୁ ବଢ଼ିଯିବା ଏହାର ଫଳ । ଅଧିକତର ସମସ୍ତ ତିକ୍ତ ଓ ନୈରାଶ୍ୟ ଜନିତ ଅଭିଜ୍ଞତା ସତ୍ତ୍ୱେ ବୈଦେଶିକ ସାହାଯ୍ୟ ଉପରେ ଅଧିକ ନିର୍ଭର କରାଯାଉଛି ।

ବେକାର ସମସ୍ୟାର ସମାଧାନ ଦିଗରେ ଏହି ଦ୍ୱିତୀୟ ଯୋଜନାରୁ କିଛି ଆଶା କରାଯାଇ ନପାରେ । ନିଜେ ଯୋଜନା

ପ୍ରସ୍ତୁତକାରୀ ମଧ୍ୟ ଏକଥା ସ୍ୱୀକାର କରିଛନ୍ତି ଯେ ଯୋଜନାର କାର୍ଯ୍ୟକାଳ ପୂରିଗଲା ପରେ ମଧ୍ୟ କାମ ନ ମିଳୁଥିବା ଲୋକଙ୍କ ସଂଖ୍ୟା ବର୍ତ୍ତମାନଠାରୁ ଆହୁରି ଅଧିକ ହେବ ।

ସର୍ବୋପରି ସାମାଜିକ ନ୍ୟାୟ ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରସାର ପାଇଁ ଯୋଜନାରେ କୌଣସି ପ୍ରତିଶ୍ରୁତି ନାହିଁ ।

ଆୟରେ ତାରତମ୍ୟ କେବଳ ପୂର୍ବପରି ନ ରହି ଏ ଯୋଜନା ଦ୍ୱାରା ଆହୁରି ତୀବ୍ର ହେବ। ୧୯୫୫ ଡିସେମ୍ବରରେ ଶଠା ଯୋଜନାର ସ୍ମାରକ ପତ୍ରରେ ଏହା ହିଁ ଉଲ୍ଲେଖ ଥିଲା ।

ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଆଗଭଳି ପ୍ରଧାନତଃ ଅମଲାତାନ୍ତ୍ରିକ କର୍ମଚାରୀମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ ।

ଏହି ସବୁକୁ ବିଚାର କଲେ, ଏହା ଆଜି ଅତି ସ୍ପଷ୍ଟ ହୋଇ ଉଠୁଛି ଯେ ଯୋଜନା ପ୍ରସ୍ତୁତ କଲାବେଳେ ଜାତି ଓ ଦେଶର ସ୍ୱାର୍ଥ ଅପେକ୍ଷା ଶାସକ ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥ ରକ୍ଷା କରିବାକୁ ପ୍ରଧାନ ଦୃଷ୍ଟି ଦିଆଯାଇଛି ।

ତେଣୁ ପ୍ରଧାନ ପ୍ରଧାନ ପ୍ରଶ୍ନ ଗୁଡ଼ିକ ଉପରେ ଯୋଜନାକୁ ଆଉଥରେ ପୂରାପୂରି ଶୋଧିତ ନ କଲେ ଏହାର ଅସଲ ଲକ୍ଷ ପୂରଣ ହୋଇ ପାରିବ ନାହିଁ । ରାଷ୍ଟ୍ରୀୟ ଶିଳ୍ପ ସେହିପରି ଦୁର୍ବଳ ରହିବ । ବଡ଼ ବଡ଼ ଧନୀମାନଙ୍କ ହାତରେ ଆହୁରି ବେଶୀ ପୁଞ୍ଜୀ ଜମା ରହିବ । ଏଣେ କିନ୍ତୁ କୃଷିର ଅବସ୍ଥା ପୂର୍ବପରି ଶୋଚନୀୟ ରହିବ । ଶ୍ରମିକ ଶ୍ରେଣୀ ଉପରେ ଶୋଷଣର ଦାଉ ବଢ଼ି ଚାଲିବ । ସାଧାରଣ ଲୋକଙ୍କ ଉପରେ ଆହୁରି ବେଶି ବେଶି ବୋଝ ଲଦା ହେବ । ଜନସାଧାରଣଙ୍କର ପ୍ରକୃତ ଅଧିକାର ଓ ସ୍ୱାଧୀନତା ଉପରେ ଅଧିକ ଆକ୍ରମଣ ଚାଲିବ । ଏସବୁ ଦ୍ୱାରା ଦେଶ ସମାଜ-

ବାହାର ନିକଟବର୍ତ୍ତୀ ହେବ ନାହିଁ ବା ଦେଶବାସୀ ସେମାନଙ୍କର ଭାଗ୍ୟର ନିୟନ୍ତା ହୋଇ ପାରିବେ ନାହିଁ ।

ତେଣୁ ଜାତିର ସ୍ୱାର୍ଥ ଦୃଷ୍ଟିରୁ ଏ ଯୋଜନାରେ ଆବଶ୍ୟକୀୟ ସଂଶୋଧନ ଓ ପରିବର୍ତ୍ତନମାନ ଆଣିବାକୁ କମ୍ୟୁନିଷ୍ଟପାର୍ଟି ନିଶ୍ଚୟ ସଂଗ୍ରାମ କରିବ । ଏହା ସଙ୍ଗେ ସଙ୍ଗେ ଯୋଜନାରେ ଯେଉଁ ପ୍ରସ୍ତାବ ଗୁଡ଼ିକ ଦେଶପାଇଁ ମଙ୍ଗଳକର, ସେଗୁଡ଼ିକ ଶୀଘ୍ର କାର୍ଯ୍ୟକାରୀ କରିବା ପାଇଁ କମ୍ୟୁନିଷ୍ଟ ପାର୍ଟି ସଂଗ୍ରାମ କରିବ । ଏହିସବୁ ପ୍ରସ୍ତାବ ଗୁଡ଼ିକୁ କାର୍ଯ୍ୟକାରୀ ନ କରିବାକୁ ନ୍ୟସ୍ତସ୍ୱାର୍ଥ ଶ୍ରେଣୀ ଓ ସରକାରର ଅମଲାତାନ୍ତ୍ରିକ କଳଦ୍ୱାରା ଯେ ସମସ୍ତ ଉଦ୍ୟମ ହେବ ତାକୁ କମ୍ୟୁନିଷ୍ଟ ପାର୍ଟି ବାଧା ଦେବ ।

---

## ୬—କମ୍ୟୁନିଷ୍ଟ ପାର୍ଟିର କର୍ମସୂଚୀ

ଭାରତର ଲୋକେ ସବୁଜାତିସହ ଶାନ୍ତ ଓ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରଖିବାକୁ ଚାହାନ୍ତି । ସେମାନେ ଚାହାନ୍ତି, ଏସିଆ ଓ ଆଫ୍ରିକାର ନବଜାଗ୍ରତ ଦେଶଗୁଡ଼ିକ ସହ ଓ ସମାଜବାଦୀ ଦୁନିଆର ରାଷ୍ଟ୍ରଗୁଡ଼ିକ ସହ ଆମର ସମ୍ପର୍କ ଆହୁରି ଦୃଢ଼ହେଉ । ମିଳିତଜାତିସଂଘରେ ଚୀନର ଜନତନ୍ତ୍ର ତାର ହକ୍ ସ୍ଥାନ ପାଉ, ଜାତୀୟ ସ୍ୱାଧୀନତା ପାଇଁ ଲଢୁଥିବା ସମସ୍ତ ଦେଶପ୍ରତି ସମ୍ଭବପର ସମସ୍ତ ସାହାଯ୍ୟ ଓ ସମର୍ଥନ ଦିଆଯାଉ । ଆମେ ଚାହୁଁ ଯେ ଦକ୍ଷିଣଆଫ୍ରିକାରେ ଆମର ଯେଉଁ ଭାଇ ଭଉଣୀମାନେ ବର୍ଣ୍ଣ ବିଦ୍ୱେଷ ବିରୋଧରେ ମାନବିକ ସମ୍ମାନ ପାଇଁ ବୀରତ୍ୱପୂର୍ଣ୍ଣ ସଂଗ୍ରାମ କରୁଛନ୍ତି, ସେମାନଙ୍କୁ ସମସ୍ତ-

ପ୍ରକାର ସାହାଯ୍ୟ ଦିଆଯାଉ । ସମସ୍ତପ୍ରକାର ସାମରିକ ଚୁକ୍ତିର ବିରୋଧ କରିବା ସଙ୍ଗେ ସଙ୍ଗେ ଭାରତର ଲୋକେ ଚାହାନ୍ତି ଯେ ସମସ୍ତ ଦେଶରୁ ସମସ୍ତ ବୈଦେଶିକ ସେନା ବାହିନୀଙ୍କୁ ଉଠାଇ ନିଆଯାଉ । ନିରସ୍ତ୍ରୀକରଣ ଓ ଜନକ୍ଷୟକାରୀ ସମସ୍ତ ଅସ୍ତ୍ର ଶସ୍ତ୍ର ବେଆଇନ କରିବା ସମସ୍ତ ଭାରତବାସୀଙ୍କର ଦାବୀ । ସେମାନେ ପର୍ତ୍ତୁଗୀଜ ଅଧିକୃତ ଭାରତୀୟ ଅଞ୍ଚଳର ମୁକ୍ତିପାଇଁ ଦାବୀ ଜଣାଇ ଅଛନ୍ତି ।

ପ୍ରତ୍ୟେକ ଭାରତବାସୀ ଏହା ଚାହେଁ ଯେ, ଶାନ୍ତିର ସୁରକ୍ଷା ପାଇଁ ସଂଗ୍ରାମ କରୁଥିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାର ବୈଦେଶିକ ଆକ୍ରମଣ ବିରୋଧରେ ଆମର ଦେଶରକ୍ଷା ବ୍ୟବସ୍ଥାକୁ ଆହୁରି ମଜବୁତ କରାଯାଉ ।

ଲୋକଙ୍କର ଏହି ଆକାଂକ୍ଷା ଓ ଦାବୀକୁ ପୂରଣ କରୁଥିବା ସମସ୍ତ ନୀତି ଓ କର୍ମପନ୍ଥା ପାଇଁ ଭାରତୀୟ କମ୍ୟୁନିଷ୍ଟପାର୍ଟି ଅନ୍ୟାନ୍ୟ ପ୍ରଗତିଶୀଳ ଶକ୍ତିଗୁଡ଼ିକ ମିଳିତ ଭାବେ ସଂଗ୍ରାମକରି ଆସିଛି । ଏ ଦିଗରେ ଆମରି ନୀତି ବରାବର ଏଇଯେ। ରହିବ- ଶାନ୍ତିପାଇଁ ଓ ସାମରିକମେଣ୍ଟ ବିରୋଧରେ ପରିଚାଳିତ ଭାରତର ବୈଦେଶିକ ନୀତିକୁ ପରିବର୍ତ୍ତନ କରିବାକୁ ଯେଉଁ ପ୍ରତିକ୍ରିୟାଶୀଳ ଉଦ୍ୟମସବୁ ହେଉଛି,କମ୍ୟୁନିଷ୍ଟପାର୍ଟି ତାର ବିରୋଧ କରିବ । ଆମର ବୈଦେଶିକ ନୀତିକୁ ଆହୁରି ଶକ୍ତିଶାଳୀ କରିବାକୁ ପାର୍ଟି ଉଦ୍ୟମ କରିବ ।

ବ୍ରିଟିଶ ରାଜ୍ୟଗୋଷ୍ଠୀସହ ଭାରତର ସମସ୍ତ ସମ୍ପର୍କ ଛିନ୍ନ କରିବା ପାଇଁ କମ୍ୟୁନିଷ୍ଟପାର୍ଟି ନିଜର ସଂଗ୍ରାମକୁ ଆହୁରି ଦୃଢ଼ କରିବ ।

ଗୋଆର ମୁକ୍ତି ଆନ୍ଦୋଳନକୁ ଉପଯୁକ୍ତ କରିବା ଦିଗରେ ସାହାଯ୍ୟ କରିବା ପାଇଁ କମ୍ୟୁନିଷ୍ଟପାର୍ଟି ନିଜର କ୍ଷମତା ଭିତରେ

ଯାହା କିଛି ସମ୍ଭବ ତା କରିବାକୁ ପ୍ରସ୍ତୁତ । ଏ ସମସ୍ୟାରେ ଭାରତ ସରକାର ଯେପରି ଫଳପ୍ରଦ ଭାବରେ ହସ୍ତକ୍ଷେପ କରନ୍ତି ଓ ଭାରତର ମାଟି ଉପରୁ ଉପନିବେଶବାଦର ଏଇ ଶେଷ ଚିହ୍ନ ଯେତେ ଶୀଘ୍ର ଲୋପ ପାଏ, ଏଥିପାଇଁ କମ୍ୟୁନିଷ୍ଟ ପାର୍ଟି ଯଥାସାଧ୍ୟ ଉଦ୍ୟମ କରିବ ।

ଭାରତ ଓ ପାକିସ୍ଥାନ ଭିତରେ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠିତ ହୋଇ, ଏଇ ଦୁଇ ଦେଶଭିତରେ ବାଣିଜ୍ୟ ଓ ସାଂସ୍କୃତିକ ସମ୍ପର୍କ ଯେପରି ବୃଦ୍ଧି ପାଏ ଓ ଏଇ ଦୁଇ ଦେଶର ଲୋକଙ୍କ ଭିତରେ ଯୋଗାଯୋଗ ପାଇଁ ଯେପରି ଅଧିକ ସୁବିଧା ମିଳେ, ଏଥି ନିମନ୍ତେ କମ୍ୟୁନିଷ୍ଟପାର୍ଟି ଉଦ୍ୟମ କରିବ ।

ଅସ୍ତ୍ରଶସ୍ତ୍ର ଓ ନୌବାହିନୀ ଏବଂ ବିମାନ ବାହିନୀ ଆଦିର ଉପକରଣ ପ୍ରସ୍ତୁତ କରୁଥିବା ସାମରିକ ଶିଳ୍ପର ଉନ୍ନତି ପାଇଁ କମ୍ୟୁନିଷ୍ଟପାର୍ଟି ଦାବୀ କରିବ । ଆମର ନିରପତ୍ତା ଓ ଜାତୀୟ ସ୍ୱାଧୀନତାକୁ ଶକ୍ତିଶାଳୀ କରିବା ପାଇଁ ଏହା ଅତି ଜରୁରୀ । ସଶସ୍ତ୍ର ବାହିନୀର ସୈନ୍ୟମାନଙ୍କ ବିଶେଷକରି ତଳପାହ୍ୟା ସେନାର ଆର୍ଥିକ ଅବସ୍ଥା ଆହୁରି ଉନ୍ନତ ଓ ସ୍ୱଚ୍ଛଳ କରିବା ପାଇଁ ପାର୍ଟି ଦାବୀ କରୁଛି । ସଶସ୍ତ୍ର ବାହିନୀ ଭିତରେ ଗଣତାନ୍ତ୍ରିକ ଚେତନାର ବିକାଶ ପାଇଁ ସମସ୍ତ ଯତ୍ନ ନେବାକୁ ପାର୍ଟି ଦାବୀ କରୁଛି । ଏହା ଦ୍ୱାରା ଦେଶର ଜନସାଧାରଣ ଓ ସୈନ୍ୟ ବାହିନୀ ଭିତରେ ହାର୍ଦ୍ଦିକ ସଂପର୍କ ଗଢ଼ି ଉଠିବ ।

ଏସବୁ କର୍ମ୍ମସୂଚୀ ଥୋଇବା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟପାର୍ଟି ଏକଥା ଦୃଢ଼ଭାବରେ ବିଚାର କରେ ଯେ ଗୋଟିଏ ଦେଶର ଶକ୍ତି ପ୍ରଧାନତଃ ସେ ଦେଶର ଅର୍ଥନୀତି ଆଭ୍ୟନ୍ତରିଣ ଏକତା, ସାମାଜିକ ବ୍ୟବସ୍ଥା ଏବଂ ଜନସାଧାରଣଙ୍କର ଅବସ୍ଥା ଉପରେ ନିର୍ଭର କରେ ।

ସୁତରାଂ ଏଥିପାଇଁ ଶିଳ୍ପ କ୍ଷେତ୍ରରେ ଆମକୁ ଦ୍ରୁତ ଅଗ୍ରଗତି କରିବାକୁ ପଡ଼ିବ; କୃଷି ବ୍ୟବସ୍ଥାକୁ ନୂଆକରି ସଂଗଠିତ କରିବାକୁ ହେବ; ଜନସାଧାରଣଙ୍କର ଅବସ୍ଥାରେ ଉନ୍ନତି ଆଣିବାକୁ ପଡ଼ିବ ଏବଂ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଆମର ପଦକ୍ଷେପ ଯେପରି ଦ୍ରୁତ ହୁଏ, ସେଥିପାଇଁ ଲାଗିଯିବାକୁ ପଡ଼ିବ । ଏହା ସଙ୍ଗେ ସଙ୍ଗେ ଗଣତନ୍ତ୍ରର ସର୍ବାଙ୍ଗ ବିକାଶ ସବୁଠୁ ବେଶୀ ଆବଶ୍ୟକ । ଏସବୁ କର୍ମପନ୍ଥା ଯଦି ଗ୍ରହଣ କରା ନ ଯାଏ ତେବେ ଆମର ଜାତୀୟ ସ୍ୱାଧୀନତାର ମୂଳଦୁଆ କେବେ ମଜଭୁତ ହୋଇ ପାରିବ ନାହିଁ । ଏଥିପ୍ରତି ସବୁବେଳେ ବରାବର ବିପଦର ଆଶଙ୍କା ରହିଥିବ ଏବଂ ଜନସାଧାରଣ ଯେଉଁ ପ୍ରକାର ସ୍ୱାଧୀନତା ଚାହୁଁଥିଲେ ଏହା ତାଠାରୁ ଅନେକ ଦୂରରେ ରହିଯିବ ।

ତେଣୁ କମ୍ୟୁନିଷ୍ଟ ପାର୍ଟି ଦେଶର ପୁନର୍ଗଠନର ଦାୟିତ୍ୱ ଉପରେ ଅଧିକ ଗୁରୁତ୍ୱ ସବୁବେଳେ ଦେଇଆସିଛି । ଜାତୀୟ ପୁନର୍ଗଠନର କାର୍ଯ୍ୟକୁ ସଫଳତାର ସହିତ କାର୍ଯ୍ୟକାରୀ କରିବାକୁ ହେଲେ କେତେକ ମୌଳିକ ଓ ସୁଦୂରପ୍ରସାରୀ ପ୍ରଗତିଶୀଳ କାର୍ଯ୍ୟ ପନ୍ଥା ଗ୍ରହଣ କରିବାକୁ ହେବ ।

ଏଥିନିମନ୍ତେ ଆମ ଅର୍ଥନୀତି ଗୁରୁତ୍ୱପୂର୍ଣ୍ଣ ବିଭାଗରୁ ବ୍ରିଟିଶ ପୁଞ୍ଜିକୁ ହଟାଇ ନେବାକୁ ପଡ଼ିବ । ଏକଚାଟିଆ ପୁଞ୍ଜିପତିଙ୍କ ଅଧିକାରକୁ କ୍ଷୁଣ୍ଣ କରି ରାଷ୍ଟ୍ରୀୟ ଶିଳ୍ପକୁ ଆହୁରି ପ୍ରସାର କରିବାକୁ ହେବ । ଜମିଦାରୀ ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ଉଠାଇ ଦିଆଯାଇ ଚାଷୀ ହାତରେ ତାହା ଦେବାକୁ ପଡ଼ିବ ଏବଂ ତା ମୁଣ୍ଡରେ ଲଦାହୋଇଥିବା ବୋଝର ଭାର ହାଲକା କରିବାକୁ ପଡ଼ିବ । ଆୟ ସମ୍ବନ୍ଧରେ ଆଜି ଯେଉଁ ତାରତମ୍ୟ ଦେଖାଯାଉଛି ତାକୁ କମାଇ ଦେବାକୁ ହେବ । ବେକାରୀ ସମସ୍ୟାର ସମାଧାନ ଆଜି ନିହାତି ଜରୁରୀ ।

ଏଥିପାଇଁ ପ୍ରସାରଣଶୀଳ ଆଭ୍ୟନ୍ତରୀଣ ବଜାର ସୃଷ୍ଟିକରିବାକୁ ପଡ଼ିବ । ଜନସାଧାରଣଙ୍କ ଅବସ୍ଥାର ଆଶାନୁରୂପ ଉନ୍ନତିଦ୍ୱାରା ସେମାନଙ୍କ ମନରେ କର୍ମ ପ୍ରେରଣା ଆଣିଦେବା ପାଇଁ ଧାରାବାହିକ ଉଦ୍ୟମ କରିବାକୁ ପଡ଼ିବ । ସ୍ୱାସ୍ଥ୍ୟ, ବାସସ୍ଥାନ ଓ ସଂସ୍କୃତି କ୍ଷେତ୍ରରେ ଆମର ଉନ୍ନତି ଆଜ ଅତି ପ୍ରୟୋଜନୀୟ ।

ଟିକସର ପ୍ରଧାନ ବୋଝ ଯେପରି ଧନବାନ ଶ୍ରେଣୀ ଉପରେ ପଡ଼େ, ସେଥିପ୍ରତି ଦୃଷ୍ଟି ରଖି ଟିକସ ବ୍ୟବସ୍ଥାକୁ ମୌଳିକ ଭାବେ ବଦଳାଇବାକୁ ପଡ଼ିବ । ସବୁ ସ୍ତରରେ, ପ୍ରତ୍ୟେକ କ୍ଷେତ୍ରରେ ଜନ ସାଧାରଣଙ୍କ ଭିତରେ ଯେପରି ସହଯୋଗୀ ମନୋବୃତ୍ତି କର୍ମୋତ୍ସାହ ଓ ଉଦ୍‌ଯୋଗ ବୃଦ୍ଧିପାଇବ, ସେଥିନିମନ୍ତେ ଗଣତାନ୍ତ୍ରିକ ନୀତି ଓ ପନ୍ଥାକୁ ଆହୁରି ପ୍ରସାରକରିବାକୁ ପଡ଼ିବ ।

ଏହିସବୁ ନୀତିକୁ ଆଖି ଆଗରେ ରଖି କମ୍ୟୁନିଷ୍ଟ ପାର୍ଟି ନିମ୍ନଲିଖିତ କାର୍ଯ୍ୟକର୍ମ ଉପସ୍ଥାପିତ କରୁଛି, ଏବଂ ଏଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ କମ୍ୟୁନିଷ୍ଟ ପାର୍ଟି ଆପ୍ରାଣ ଉଦ୍ୟମ କରିବ ।

## ଶିଳ୍ପ ବିକାଶ ସମ୍ବନ୍ଧରେ ଆମର କର୍ମସୂଚୀ

ରାଷ୍ଟ୍ରୀୟ ମାଲିକାନା ତଳେ ମୂଳ ଓ ହେଜନଦାର ଶିଳ୍ପର ବିକାଶ ପାଇଁ ଅଧିକ ଯୋର ଦେବାକୁ କମ୍ୟୁନିଷ୍ଟପାର୍ଟି ଦାବୀ କରୁଛି । ଅର୍ଥନୈତିକ ଭାବରେ ଯେଉଁ ଅଞ୍ଚଳ ଗୁଡ଼ିକ ପଛରେ ପଡ଼ିଛି, ସେମାନଙ୍କର ଉନ୍ନତି ଦୃଷ୍ଟିରୁ ଏହି ଶିଳ୍ପାନୁଷ୍ଠାନ ଗୁଡ଼ିକ ସେଇ ସବୁ ଅଞ୍ଚଳରେ ହେବା ଉଚିତ୍ ।

ଏହିସବୁ ହେଜନଦାର ଓ ମୂଳଶିଳ୍ପର ବିକାଶ ସଙ୍ଗେ ସଙ୍ଗେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ପାଇଁ ଜନସାଧାରଣଙ୍କ ଚାହିଦା ମେଣ୍ଟାଇବା ପାଇଁ ଯେଉଁ ସବୁ ଶିଳ୍ପ ରହିଛି, ସେଗୁଡ଼ିକୁ ଅଧିକ-

କାମରେ ଲଗାଇବା ଉଚିତ୍ । କୁଟୀର ଶିଳ୍ପ ଓ କ୍ଷୁଦ୍ର କ୍ଷୁଦ୍ର ଶିଳ୍ପଗୁଡ଼ିକୁ ମଧ୍ୟ ଏଥିପାଇଁ ଅଧିକ ସାହାଯ୍ୟ ଓ ଉତ୍ସାହ ଦେବା ଆବଶ୍ୟକ ।

କମ୍ୟୁନିଷ୍ଟ ପାର୍ଟି ବିଶ୍ୱାସ କରେ ଯେ, ଭାରତରେ ଯେଉଁ ସବୁ ଦେଶ-ପ୍ରେମୀ ପୁଞ୍ଜିପତି ଅଛନ୍ତି, ଆଜିର ଅବସ୍ଥାରେ ଦେଶର ଅର୍ଥନୈତିକ ବିକାଶ ପାଇଁ ସେମାନେ ଅନେକ ସାହାଯ୍ୟ କରି-ପାରିବେ । କମ୍ୟୁନିଷ୍ଟ ପାର୍ଟି ଦାବୀକରେ ଯେ ଭାରତୀୟ ଶିଳ୍ପଗୁଡ଼ିକୁ ବୈଦେଶିକ ପ୍ରତିଯୋଗିତାରୁ ରକ୍ଷା କରାଯାଉ । ପୁଞ୍ଜିପତି ମାନଙ୍କ ଯେତିକ ମାତ୍ର ନ୍ୟାଯ୍ୟ ଅଧିକାର ତାକୁ ସ୍ୱୀକାର କରାଯାଉ । ଦେଶ ଗଠନର ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଏହି ଶ୍ରେଣୀର ସକ୍ରିୟ ସହଯୋଗ ନିଆଯାଉ ।

ଜାତୀୟ ପୁନର୍ନିର୍ମାଣ ପାଇଁ ଓ ରାଷ୍ଟ୍ରାୟତ୍ତୀକୃତ ଶିଳ୍ପର ବିକାଶ ପାଇଁ ପ୍ରଚୁର ଅର୍ଥର ପ୍ରୟୋଜନ ରହିଛି । ପାର୍ଟି ଦାବୀ କରୁଛି ଯେ ଏ ଦୃଷ୍ଟିରୁ ବ୍ୟାଙ୍କ, ସାଧାରଣ ବୀମା, ମାଙ୍ଗାନିଜ, କୋଇଲା, ତମ୍ବା, ଲୁହା ଓ ସୁନାଖଣି, ଆଲମୁନିଅମ୍ ଶିଳ୍ପ ଓ ସର୍ବୋପରି ବ୍ରିଟିଶ ମାଲିକତ ଷ୍ଟୋର, ଚା ବଗିଚା ଓ କଫି ଆଦିର ଶିଳ୍ପକୁ ଜାତୀୟ-କରଣ କରାଯାଉ ।

ଯେଉଁ ଲାଭାଂଶ ବିଦେଶକୁ ରପ୍ତାନି କରାଯାଏ, ତାର ଏକ ସର୍ବୋଚ୍ଚ ପରିମାଣ ଧାର୍ଯ୍ୟ କରାଯାଉ । ଏଥିରୁ ବଳକା ଲାଭକୁ ବାଧ୍ୟତାମୂଳକ ଋଣ ହିସାବରେ ନିଆଯାଉ ।

ସମସ୍ତ ବଡ଼ ବଡ଼ ଶିଳ୍ପ ଓ ବାଣିଜ୍ୟ ପ୍ରତିଷ୍ଠାନର ଲାଭଉପରେ ସର୍ବୋଚ୍ଚ ପରିମାଣ ଧାର୍ଯ୍ୟ କରାଯାଉ ଏବଂ ବଳକା ଲାଭାଂଶକୁ ବାଧ୍ୟତା ମୂଳକ ଋଣ ହିସାବରେ ନିଆଯାଉ । ଏହି ଅର୍ଥ ଓ ବଡ଼ ବଡ଼ କଂପାନୀର ମହଜୁଡ ଥିବା ଜମାକୁ ଏକତ୍ର କରି ଜାତୀୟ

ଉନ୍ନତ୍ତନ ପାଣ୍ଠି ଖୋଲାଯାଉ । ଏହି ପାଣ୍ଠିରୁ ଜାତୀୟ ଆବଶ୍ୟକତା ଅନୁଯାୟୀ ସରକାରୀ ଓ ବେସରକାରୀ ଶିଳ୍ପ ପ୍ରତିଷ୍ଠାନମାନଙ୍କୁ ସାହାଯ୍ୟ ଯୋଗାଇ ଦିଆଯାଉ ।

ପ୍ରଧାନ ପ୍ରଧାନ ପଣ୍ୟ ଉପରେ ଚାଲୁଥିବା ବୈଦେଶିକ ବାଣିଜ୍ୟକୁ ସରକାର ନିଜ ହାତକୁ ନେଉ ଏବଂ ଏହା ଉପରେ ନିଜର ଏକଚାଟିଆ ଅଧିକାର ଜାହିର କରୁ । ଏହା ଫଳରେ ପ୍ରଚୁର ଲାଭ ମିଳିବା ସଙ୍ଗେ ସଙ୍ଗେ ଆମ ବୈଦେଶିକ ବାଣିଜ୍ୟର ବହୁମୁଖୀ ବିକାଶ ଘଟିବ ଏବଂ ଅନ୍ୟ ଦେଶ ସହ ପରସ୍ପରକୁ ସାହାଯ୍ୟ କରିବାର ଭିତ୍ତିରେ ବାଣିଜ୍ୟ ସମ୍ପର୍କ ପ୍ରତିଷ୍ଠିତ ହେବ । ଦେଶ ଭିତରେ ମଧ୍ୟ ରାଷ୍ଟ୍ରୀୟ ବାଣିଜ୍ୟ ଚାଲୁହୋଇପାରେ । ବିଦେଶରୁ ବିଳାସ ସାମଗ୍ରୀର ଆମଦାନୀକୁ ଉଲ୍ଲେଖଯୋଗ୍ୟ ଭାବରେ କମାଇ ଦିଆ ଯାଇପାରେ ।

ସମ୍ମିଳିତ ମୂଳଧନର ଲାଭ ଓ ବ୍ୟକ୍ତିଗତ ମୂଳର ଲାଭ (Corporate profit and Capital gain) ଉପରେ ଚଢ଼ା ଟିକସ ବସିବା ଉଚିତ ଏବଂ ବ୍ୟକ୍ତିଗତ ସମ୍ପଦ ଉପରେ ଟିକସ ବସିବା ଆବଶ୍ୟକ ।

ବଡ଼ ବଡ଼ ଜମିଦାରମାନଙ୍କୁ କ୍ଷତିପୂରଣ ଦେବା ସଙ୍ଗେ ସଙ୍ଗେ ବନ୍ଦ କରିଦେବା ଉଚିତ । ରାଜା ରାଜୁଡ଼ାମାନଙ୍କୁ ଦିଆ ଯାଉଥିବା ଭତ୍ତାକୁ ପୂରାପୂରି ବନ୍ଦ କରିଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଜମାଥିବା ପ୍ରଚୁର ଅର୍ଥକୁ ବାଧ୍ୟତାମୂଳକ ଋଣ ହିସାବରେ ଗ୍ରହଣ କରାଯାଉ ।

ଆୟକରକୁ ଫାଙ୍କି ଦେବାକୁ ଯେପରି ବାଟ ନ ରହିବ ସେ ଦିଗରେ ଯତ୍ନ ନିଆଯିବା ଉଚିତ ।

ଅତ୍ୟଧିକ ମୋଟା ଦରମା ପାଉଥିବା ହାକିମମାନଙ୍କ ଦରମାର ପରିମାଣ କମାଇ ଦିଆଯାଉ ।

ସରକାରୀ ଖର୍ଚ୍ଚର ଅପବ୍ୟୟକୁ ନିରୋଧ କରିବାପାଇଁ ବ୍ୟବସ୍ଥା ହେବା ଆବଶ୍ୟକ ।

ଏହିସବୁ ପ୍ରସ୍ତାବଗୁଡ଼ିକ ଅତ୍ୟନ୍ତ ବାସ୍ତବ ଏବଂ ଆମର ସମ୍ବିଧାନର ପରିସର ଭିତରେ ଏଗୁଡ଼ିକ କାର୍ଯ୍ୟକାରୀ କରାଯାଇ ପାରିବ । ଏଗୁଡ଼ିକ କାର୍ଯ୍ୟକାରୀ ହେଲେ ଜାତୀୟ ପୁନର୍ଗଠନ ପାଇଁ ଆବଶ୍ୟକ ହେଉଥିବା ଅର୍ଥର ଏକବଡ଼ ଅଂଶ ସରକାରଙ୍କ ହାତରେ ମହଜୁତ ରହିବ । ଏହା ଫଳରେ ଲୋକଙ୍କର କର୍ମ-ପ୍ରେରଣା ମଧ୍ୟ ବୃଦ୍ଧି ପାଇବ ଓ ନିଅଣ୍ଟ ବା ଅଭାବକୁ ପୂରଣ କରିବା ପାଇଁ ସେମାନେ ସ୍ୱେଚ୍ଛାରେ ପ୍ରାଣପଣେ ଲାଗି ପଡ଼ିବେ ।

## ଶ୍ରମିକ ଶ୍ରେଣୀ

ଶ୍ରମିକ ଶ୍ରେଣୀର ଅବସ୍ଥା ଆହୁରି ଉନ୍ନତ ଓ ସ୍ୱଚ୍ଛନ୍ଦ ନ ହେଲେ ଓ ଶିଳ୍ପ କ୍ଷେତ୍ରରେ ଏକ ଶାନ୍ତିପୂର୍ଣ୍ଣ ଅବସ୍ଥା ନ ରହିଲେ ଆମଦେଶର ଅର୍ଥନୈତିକ ଉନ୍ନତି ସମ୍ଭବପର ହେବ ନାହିଁ । ଶିଳ୍ପ କ୍ଷେତ୍ରର ନାନାପ୍ରକାର ସଂଘର୍ଷ ଓ ଅସନ୍ତୋଷ ଆଜି ଏକ ନିତିଦିନିଆ ଘଟଣାରୂପେ ଦେଖାଦେଇଛି । ଏହା ଫଳରେ ଶ୍ରମିକ ଶ୍ରେଣୀର ଦୁର୍ଦ୍ଦଶା ଆହୁରି ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ଉତ୍ପାଦନରେ ବାରମ୍ବାର ବାଧା ପହଞ୍ଚୁଛି ଓ ଅଗଣିତ ଶ୍ରମଦିନ ନଷ୍ଟ ହେବାରେ ଲାଗିଛି । ଏକ ଯଥାର୍ଥ ପ୍ରଗତିଶୀଳ ଶ୍ରମନୀତି ଗ୍ରହଣକରି ଏବଂ ଶ୍ରମିକ ଶ୍ରେଣୀକୁ ତାର ନିଜ ଶ୍ରମଦ୍ୱାରା ଉତ୍ପନ୍ନ ଲାଭାଂଶରୁ ନ୍ୟାଯ୍ୟ ଭାଗ ଦେବାର ବ୍ୟବସ୍ଥା କରି ଏପ୍ରକାର ସଂଘର୍ଷକୁ ରୋଧ କରାଯାଇପାରେ ।

କାରଖାନାର ଯନ୍ତ୍ରପାତି ଉନ୍ନତ କରିବା ଦିଗରେ ବର୍ତ୍ତମାନର ଗତିକୁ ପୂର୍ବାପେକ୍ଷା ଋଦ୍ଧ କରିବା ଉଚିତ ।

ମଜୁରିର ଏକ ଜାତୀୟ ସର୍ବନିମ୍ନ ହାର ସ୍ଥିର ହେବା ଉଚିତ । ସମସ୍ତ ସଂଗଠିତ ଶିଳ୍ପର ଶ୍ରମିକମାନେ ଯେପରି ସେମାନଙ୍କର ହକ୍ ମଜୁରି ପାଆନ୍ତି, ସେ ଦିଗରେ ଆବଶ୍ୟକୀୟ ବ୍ୟବସ୍ଥା ହେବା ଉଚିତ ।

ଏସବୁ ଉତ୍ପାଦନରେ ଏସବୁ ହେବା ପର୍ଯ୍ୟନ୍ତ ବର୍ତ୍ତମାନ ଶ୍ରମରେ ଯେଉଁ ଉତ୍ପାଦିକା ଶକ୍ତି ବୃଦ୍ଧିପାଇଛି ତାର ଉପରେ ଶ୍ରମିକଙ୍କ ମଜୁରି ଶତକଡ଼ା ୨୫ ଭାଗ ବଢ଼ାଇଦେବା ଉଚିତ । ମହଙ୍ଗାଭତ୍ତାକୁ ମୂଳ ମଜୁରିର ଅନ୍ତର୍ଭୁକ୍ତ କରିବା ଉଚିତ ।

ସରକାରଙ୍କଦ୍ୱାରା ନିଯୁକ୍ତ ହୋଇଥିବା ଶ୍ରମିକ ଓ କର୍ମଚାରୀମାନଙ୍କର ଦରମା ହାର, ମହଙ୍ଗା ଭତ୍ତା, ଚାକିରୀରେ ନିରାପତ୍ତା ଓ ଟ୍ରେଡ୍ ଇଉନିୟନ ଅଧିକାର ଆଦି ପ୍ରଶ୍ନଗୁଡ଼ିକ ଉପରେ ପୁନଃ-ବିଚାର କରିବାପାଇଁ ଏକ ଦରମା କମିଶନ ନିଯୁକ୍ତ ହେବା ଆବଶ୍ୟକ ।

ସଂଗଠିତ ଶିଳ୍ପର ସମସ୍ତ କ୍ଷେତ୍ରରେ ସମାଜ ବୀମା ଯୋଜନା କାର୍ଯ୍ୟକାରୀ ହେବା ଆବଶ୍ୟକ । ବେକାରମାନଙ୍କୁ ଭତ୍ତା ମଞ୍ଜୁର ହେବା ବାଞ୍ଛନୀୟ ।

ବାସଗୃହ ସଂପର୍କରେ ବର୍ତ୍ତମାନ ଯେଉଁ ସମସ୍ୟା ରହିଛି, ତାର ସମାଧାନ ପାଇଁ ଆଶୁ ବ୍ୟବସ୍ଥା ହେବା ଉଚିତ ଏବଂ ଏପରି ବ୍ୟବସ୍ଥାରେ ଶ୍ରମିକମାନେ ହିଁ ମୁଖ୍ୟ ଭାଗ ଗ୍ରହଣ କରିବେ ।

ଶ୍ରମିକ ଓ କର୍ମଚାରୀମାନେ ସେମାନଙ୍କ ଦ୍ୱାରା ନିର୍ବାଚିତ ହୋଇଥିବା କମିଟି ଜରିଆରେ ଯେପରି ଶିଳ୍ପ ଗୁଡ଼ିକର ପରିଚାଳନାରେ ସକ୍ରିୟ ଭାଗ ନିଅନ୍ତି, ତାର ବ୍ୟବସ୍ଥା ହେବା ଉଚିତ । ଶିଳ୍ପରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବାପାଇଁ ଓ ଗଣତନ୍ତ୍ରର ଅଭି-

ବୃଦ୍ଧିପାଇଁ ସୁସ୍ଥ ଟ୍ରେଡ୍ ଇଉନିୟନ୍ ସଂଗଠନ ବିକାଶ ପାଇବା ଦରକାର । କିନ୍ତୁ କର୍ତ୍ତୃପକ୍ଷଙ୍କ ପୃଷ୍ଠପୋଷକତା ଲାଭ କରୁଥିବା ୟୁନିଅନ୍ ଗୁଡ଼ିକ ଶ୍ରମିକଙ୍କ ଉପରେ ଲଦିଦେବା ପାଇଁ ସରକାରୀ ନୀତି ଏ ଦିଗରେ ପ୍ରଧାନ ବାଧା ସୃଷ୍ଟି କରୁଛି । ଟ୍ରେଡ୍ ୟୁନିୟନ୍ ଏକତା ଆଣିବା ଦିଗରେ ମଧ୍ୟ ଏହା ବାଧା ଉପୁଜାଉଛି । ଏହି ନୀତିକୁ ଏବଂ କୌଣସି ନିର୍ଦ୍ଦିଷ୍ଟ ୟୁନିଅନ୍‌କୁ ଶ୍ରମିକଙ୍କ ଉପରେ ଲଦି-ଦେବାରେ ସାହାଯ୍ୟ କରୁଥିବା ଆଇନ୍ ଗୁଡ଼ିକୁ କମ୍ୟୁନିଷ୍ଟପାର୍ଟି ପୂର୍ବାପର ବିରୋଧ କରୁଛି ।

କମ୍ୟୁନିଷ୍ଟପାର୍ଟି ଏପରି ପନ୍ଥା ନେବାକୁ ଦାବୀ କରୁଛି ଯାହା ଦ୍ୱାରା ଗୋଟିଏ କାରଖାନା ପାଇଁ ଗୋଟିଏ ଇଉନିୟନ୍ ତଳେ ଶ୍ରମିକମାନେ ଏକଜୁଟ୍ ହୋଇ ପାରିବେ ।

ତଥାକଥିତ ଜାତୀୟ ନିରାପତ୍ତା ଓ ଜାତୀୟ ସ୍ୱାର୍ଥରକ୍ଷା ଆଦି ଯେଉଁ ସବୁ ଆଇନ ଦ୍ୱାରା ଶ୍ରମିକମାନଙ୍କୁ ଅନ୍ୟାୟଭାବରେ ନିକାଲି ଦିଆଯାଉଛି ସେସବୁ ଆଇନ୍ ତୁରନ୍ତ ପ୍ରତ୍ୟାହାର ହେବା ଉଚିତ ।

ନିଜ ଇଚ୍ଛାରେ ସ୍ଥିର କରିବା ଟ୍ରେଡ୍ ଇଉନିଅନ୍‌ରେ ଯୋଗ ଦେବାପାଇଁ, ସଭାସମିତି, ଧର୍ମଘଟ ଓ ବିକ୍ଷୋଭ ଆଦି କରିବା ପାଇଁ, ମିଳିତ ଭାବରେ ନିଜର ଦାବୀ ପୂରଣ ପାଇଁ ସଂଗ୍ରାମ କରିବାକୁ ଶ୍ରମିକ ଶ୍ରେଣୀର ଯେଉଁ ଅଧିକାର ଅଛି; ତା ଉପରୁ ସମସ୍ତ ପ୍ରକାର ହସ୍ତକ୍ଷେପ ଓ କଟକଣା ତୁରନ୍ତ ଉଠାଇ ନିଆଯିବା ଉଚିତ ।

## ମଧ୍ୟବିତ୍ତ

ଜାତୀୟ ପୁନର୍ନିର୍ମାଣରେ ମଧ୍ୟବିତ୍ତ ଶ୍ରେଣୀର ଏକ ବିଶେଷ ଭୂମିକା ରହିଛି । କିନ୍ତୁ ଆବଶ୍ୟକୀୟ ସୁବିଧା ସୁଯୋଗ ତ ମିଳିବା ଦୂରର କଥା ; ଦିନୁଦିନ ବଢ଼ି ଉଠୁଥିବା ବେକାରୀ ଓ ଆର୍ଥିକ-

ଦୂରବସ୍ଥାରେ ଏ ମଧ୍ୟବିତ୍ତମାନେ ଅଧିକ ଡଳଡଳାନ୍ତ ହେଉଛନ୍ତି । ଏମାନଙ୍କୁ ଗୃହକର୍ମ ଓ ଅନ୍ୟାନ୍ୟ ସୁଯୋଗ ମିଳିବା ଦିଗରେ ଯେପରି ବ୍ୟାପକ ବ୍ୟବସ୍ଥା କରାଯାଇ ପାରିବ ଓ ଦାରିଦ୍ର୍ୟ କବଳରୁ ମୁକ୍ତି ଲଭ କରି ଏହି ଶ୍ରେଣୀର ପ୍ରତିଭାଶକ୍ତି ଯେପରି ଦେଶ ସଂଗଠନରେ ପୂର୍ଣ୍ଣ ଭାବରେ ନିୟୋଜିତ ହୋଇପାରିବ ସେଥିପାଇଁ ପାର୍ଟି ସଂଗ୍ରାମ କରିବ ।

## କୃଷି ଓ କୃଷକ

ବର୍ତ୍ତମାନ ଓ ଆସନ୍ନା କିଛିକାଳ ପାଇଁ କୃଷି ହେଉଛି ଆମ ଲୋକଙ୍କର ପ୍ରଧାନ ଅବଲମ୍ବନ । ଆମ କାରଖାନା ପାଇଁ କଞ୍ଚା ମାଲ ଯୋଗାଇବାକୁ ଓ ଲୋକଙ୍କର ଅଭାବ ଦୂର କରିବାକୁ କୃଷିର ଦ୍ରୁତ ଉନ୍ନତି ଆଜି ଅତି ଜରୁରୀ । ଏହାଦ୍ୱାରା ଚାଷୀର ଅବସ୍ଥାର ଉନ୍ନତିହେବା ସଙ୍ଗେ ସଙ୍ଗେ ଦେଶରେ ଏକ ସୁଦୃଢ଼ ଓ ପ୍ରସାରଣ-ଶୀଳ ଆଭ୍ୟନ୍ତରୀଣ ବଜାର ସୃଷ୍ଟି ହୋଇ ପାରିବ । କିନ୍ତୁ ସରକାରୀ କୃଷି ନୀତି ଓ ବିଶେଷ କରି ଭୂସଂସ୍କାର ଦିଗରେ ସରକାରୀ ନୀତି ଏ କୃଷିର ଉନ୍ନତି ଦିଗରେ ସମସ୍ତ ବାଧା ଆଣି ଦେଉଅଛି ।

କମ୍ୟୁନିଷ୍ଟ ପାର୍ଟି ଦାବୀ କରୁଛି ଯେ ଆଉ ଅଧିକ କାଳ ବିଳମ୍ବ ନ କରି ପ୍ରକୃତ ଚାଷୀ ହାତରେ ଜମି ଦେବାର ନୀତିକୁ ଶୀଘ୍ର କାର୍ଯ୍ୟକାରୀ କରାଯାଉ । ଅଧିକନ୍ତୁ ଖଜଣା ଓ ଟିକସର ବୋଝକୁ ନିଶ୍ଚିତ ଭାବେ ହ୍ରାସ କରାଯାଉ ।

## ଜଣପିଚ୍ଛା ଜମିର ସର୍ବୋଚ୍ଚହାର

( Family holding )ର ୩ଗୁଣରୁ ଅଧିକା କରା ନ ଯାଉ ଏବଂ ସର୍ବୋଚ୍ଚ ହାର ସ୍ଥିର କଲା ପରେ ବଳକା ଜମିକୁ କ୍ଷେତ-ମୂଲିଆ ଓ ଚାଷୀଙ୍କ ହାତରେ ବିନା ମୂଲ୍ୟରେ ବାଣ୍ଟି ଦିଆଯାଉ ।

ଗଣତାନ୍ତ୍ରିକ ଭିତ୍ତିରେ କ୍ଷେତମୂଲିଆ ଓ ଚାଷୀ କମିଟିଗୁଡ଼ିକ ହାତରେ ଭୂମି ସଂସ୍କାରକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ଛାଡ଼ି-ଦିଆଯାଉ । ସରକାରୀ ମାଲିକାନାରେ ଥିବା ଚାଷୋପଯୋଗୀ ଅନା-ବାଦୀ ଭୂମି ସବୁକୁ ଗରିବ ଚାଷୀ ଓ କ୍ଷେତମୂଲିଆଙ୍କ ଭିତରେ ବାଣ୍ଟି ଦିଆଯାଇ ସେଗୁଡ଼ିକ ଆବାଦ କରିବା ପାଇଁ ଆବଶ୍ୟକୀୟ ସରକାରୀ ସାହାଯ୍ୟ ଯୋଗାଇ ଦିଆଯାଉ ।

ଜମିଦାରଙ୍କ ଦ୍ୱାରା ଉଚ୍ଛେଦ ହୋଇଥିବା ଚାଷୀ ହାତରେ ଜମିଗୁଡ଼ିକ ପୁଣି ଫେରାଇ ଦିଆଯାଉ ଓ ଅବୈଧ ଉପାୟରେ ହୋଇଥିବା ଜମିର ସମସ୍ତ ପ୍ରକାର ହସ୍ତାନ୍ତରକୁ ପୂରାପୂରି ରଦ୍ଦ କରିଦିଆଯାଉ ।

ଜମିଦାର ଓ ମହାଜନଙ୍କଠାରୁ ଆଣିଥିବା ଚାଷୀର ଋଣକୁ ଆଶାନୁରୂପ ଭାବେ କମାଇଦିଆଯାଉ । ବାକୀ ଋଣ ଗୁଡ଼ିକ କିସ୍ତିବନ୍ଦୀ ଓ ସହଜ ଭାବରେ ଦୀର୍ଘ ମିଆଦ ଦ୍ୱାରା ପରିଶୋଧ ହୋଇପାରିବାର ସୁବ୍ୟବସ୍ଥା କରାଇ ଦିଆଯାଉ ।

କୃଷିଜାତଦ୍ରବ୍ୟ ପାଇଁ ଉଚିତ୍ ମୂଲ୍ୟ ସଂପର୍କରେ ଚାଷୀକୁ ନିର୍ଭରତା ଦିଆଯାଉ ।

କ୍ଷେତ ମୂଲିଆଙ୍କ ପାଇଁ ଏକ ସର୍ବନିମ୍ନ ନିର୍ଦ୍ଦିଷ୍ଟ ମଜୁରୀ ସ୍ଥିର କରାଯାଉ । ମହାଜନ ବା ଜମିଦାରଙ୍କଠାରୁ ଆଣିଥିବା ସମସ୍ତ ଋଣରୁ ସେମାନଙ୍କୁ ସଂପୂର୍ଣ୍ଣରୂପେ ଛାଡ଼ ଦିଆଯାଉ ।

ବଡ଼ ବଡ଼ ଯୋଜନା ସାଙ୍ଗକୁ ଛୋଟଧରଣର ବିଭିନ୍ନ ଯୋଜନାମାନ ନେଇ ଜଳସେଚନକୁ ଆହୁରି ପ୍ରସାର କରାଯାଉ । ଜଳସେଚନ ବାବଦର ଦେୟର ହାରକୁ ଉଲ୍ଲେଖ ଯୋଗ୍ୟରୂପେ କମାଇ ଦିଆଯାଉ ।

ଋଣ ବ୍ୟବସ୍ଥା ପାଇଁ ସାର, ବିହନ ଓ କୃଷି ଉପକରଣ ସୁବିଧାରେ ମିଳିବା ପାଇଁ ସମବାୟ ସଂଗଠନକୁ ଆହୁରି ବ୍ୟାପକ କରାଯାଉ । ପ୍ରଚଳିତ ସମବାୟ ଆଇନ ସବୁକୁ ଏପରି ଭାବରେ ବଦଳାଇ ଦିଆଯିବା ଉଚିତ ଯେ ଯେପରି କି ଉପରୁ ନିଯୁକ୍ତ ହୋଇଥିବା କର୍ମଚାରୀଙ୍କ କ୍ଷମତା ହ୍ରାସ ହେବା ସଙ୍ଗେ ସଙ୍ଗେ ସମବାୟ ସମିତି ଗୁଡ଼ିକ ଅଧିକ ଗଣତାନ୍ତ୍ରିକ ମାର୍ଗରେ କାର୍ଯ୍ୟ କରିବେ ।

ଗୋରୁମାନଙ୍କର ଅବସ୍ଥାର ଉନ୍ନତିପାଇଁ ଫଳପ୍ରଦ ବ୍ୟବସ୍ଥା ନିଆଯାଉ ଓ ପ୍ରତ୍ୟେକ ଗ୍ରାମାଞ୍ଚଳରେ ପଶୁଚିକିତ୍ସାର ସୁବନ୍ଦୋବସ୍ତ କରାଯାଉ ।

## ଶରଣାର୍ଥୀ

ଶରଣାର୍ଥୀମାନଙ୍କୁ ଶୀଘ୍ର ପୁନର୍ବସତି ଦେବାପାଇଁ ଓ ସେମାନଙ୍କୁ ଉପଯୁକ୍ତ କାମ ଯୋଗାଇ ଦେବାପାଇଁ ପାର୍ଟି ଦାବୀ କରିବ ।

## ଶିକ୍ଷା ଓ ଭାଷାଗତ ନୀତି

ଆମ ଲୋକଙ୍କ ସାଂସ୍କୃତିକ ସ୍ତର ଆଜି ବହୁତ ନିମ୍ନରେ । ଜାତୀୟ ପୁନର୍ଗଠନ କାର୍ଯ୍ୟରେ ଏହା ଏକ ଗୁରୁତର ବାଧା ସୃଷ୍ଟି କରିଛି । ଏହାର ଫଳରେ ସରକାରୀ ନୀତି ସବୁର ପ୍ରଣୟନ ଓ କାର୍ଯ୍ୟକାରୀ ହେବା ଦିଗରେ ବେଶି ଭାବରେ ନାଗରିକମାନେ ସେମାନଙ୍କର ଉଚିତ ଭୂମିକା ନେଇପାରୁ ନାହାନ୍ତି । ଏହାଦ୍ୱାରା ଅମଲାତାନ୍ତ୍ରିକ କର୍ମଚାରୀମାନେ ସମସ୍ତ ଆଇନ୍ କାନୁନ୍ ଭାଙ୍ଗି ଯୋ-ହୁକୁମ ନୀତି ଜାରିକରିବାକୁ ଓ ସାଧାରଣ ଲୋକଙ୍କୁ ନାନା ଭାବରେ ହଇରାଣ କରିବାକୁ ନାନା ପ୍ରକାର ସୁଯୋଗ ପାଉଛନ୍ତି ।

ଗଣତାନ୍ତ୍ରିକ ମୀତ ଗୁଡ଼ିକ କାର୍ଯ୍ୟକାରୀ ହେବା ଦିଗରେ ଓ ବିକାଶ ପାଇବା ଦିଗରେ ଏହା ସମସ୍ତ ବାଧା ସୃଷ୍ଟି କରୁଅଛି । ତେଣୁ ଜନସାଧାରଣଙ୍କର ଏହି ସାଂସ୍କୃତିକ ପଶ୍ଚାଦ୍ପଦତାକୁ ଅତିକ୍ରମ କରିବା ଆଜ ଏକ ଗୁରୁତ୍ୱପୂର୍ଣ୍ଣ ଜାତୀୟ ଦାୟିତ୍ୱ ।

କମ୍ୟୁନିଷ୍ଟ ପାର୍ଟି ବିଚାର କରେ ଯେ ଏଥିପାଇଁ ଅବିଳମ୍ବେ ନିମ୍ନଲିଖିତ କାର୍ଯ୍ୟକ୍ରମଗୁଡ଼ିକ ଗ୍ରହଣ କରାଯିବା ଉଚିତ । ଦେଶର ଦ୍ରୁତ ଶିଳ୍ପୀକରଣ ଲକ୍ଷ୍ୟକୁ ହାସଲ କରିବାକୁ ହେଲେ ବୈଜ୍ଞାନିକ ଓ କାରିଗରୀ ଶିକ୍ଷାର ଅଧିକ ପ୍ରସାର ଓ ଅଗ୍ରଗତି ଦରକାର । ତେଣୁ ଏହି ଆବଶ୍ୟକତାକୁ ଆଖି ଆଗରେ ରଖି ଶିକ୍ଷା ବ୍ୟବସ୍ଥାକୁ ପୁନଃ ସଂଗଠନ କରିବାକୁ ପଡ଼ିବ ।

ସ୍କୁଲଦରମା, ଦରମା, ପାଠ୍ୟପୁସ୍ତକର ମୂଲ୍ୟ ଏବଂ ଶିକ୍ଷାଗତ ଅନ୍ୟାନ୍ୟ ଖର୍ଚ୍ଚର ହାରକୁ କମାଇ ଦେବାକୁ ହେବ । ଯେପରି କି ସାଧାରଣ ଲୋକମାନେ ତାହା ତୁଲାଇବାକୁ ସମର୍ଥ ହେବେ ।

## କଳା ଓ ସଂସ୍କୃତି

ଆମ ଜନସାଧାରଣଙ୍କ ସଂସ୍କୃତିର ସୁସମୃଦ୍ଧି ଓ ବହୁମୁଖୀ ବିକାଶ ହିଁ ଜାତି-ନିର୍ମାଣର ଏକ ମୌଳିକ ଅଂଶ । ଏଇ କେତେ ବର୍ଷ ହେଲା ବିଭିନ୍ନ ଅଞ୍ଚଳରେ ନାନା ପ୍ରକାର ସାଂସ୍କୃତିକ କାର୍ଯ୍ୟ-କଳାପ ବୃଦ୍ଧି ପାଇବା ଦେଖାଯାଇଛି । କିନ୍ତୁ ସରକାର ଓ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ଠାରୁ ଯଥେଷ୍ଟ ଭାବରେ ସାହାଯ୍ୟ ବା ସୁବିଧା ନ ପାଇବାରୁ ଏସବୁର ଅଗ୍ରଗତି ବାଧା ପାଉଛି ।

### କମ୍ୟୁନିଷ୍ଟପାର୍ଟି ବିଚାର କରୁଛି

—ପ୍ରତ୍ୟେକ ପ୍ରଦେଶରେ ରାଜ୍ୟ ସରକାର ବିଭିନ୍ନ ସାଂସ୍କୃତିକ ବା ସାହିତ୍ୟିକ ଅନୁଷ୍ଠାନ ମାନଙ୍କ ପରାମର୍ଶ ନେଇ କଳା ଓ

ସାହିତ୍ୟ ସମ୍ବନ୍ଧୀୟ ବିଭିନ୍ନ ପୁସ୍ତିକା ପ୍ରକାଶ ବା ଶିକ୍ଷାମୂଳକ ଓ ପ୍ରଗତିଶୀଳ ବିଭିନ୍ନ ଫିଲମ୍ ଓ ନାଟକ ଆଦିର ପରିବେଷଣ ପାଇଁ ସମସ୍ତ ପ୍ରକାର ସାହାଯ୍ୟ କରନ୍ତୁ ।

—ଶିକ୍ଷାନୁଷ୍ଠାନ ମାନଙ୍କରେ ସଙ୍ଗୀତ ନୃତ୍ୟଆଦି ଶିଖିବାର ସୁଯୋଗ ମିଳିବା ପାଇଁ ବ୍ୟବସ୍ଥା କରାଯାଉ ।

—ସମସ୍ତ ନଗର ଓ ସହରରେ ଥିଏଟର, ସଙ୍ଗୀତ ମଞ୍ଚ ଓ ଗୃହମାନ ନିର୍ମାଣ କରାଯାଉ ।

—ନାଟକ ଅଭିନୟ ସମ୍ପର୍କୀୟ ଆଇନ ରଦ୍ଦ କରାଯାଉ ।

—ଅକ୍ଷମ ବା ଅବସରଗ୍ରସ୍ତ ଲେଖକ, ଶିଳ୍ପୀ, ନୃତ୍ୟକାର, ସ୍ୱର ଶିଳ୍ପୀ ଆଦି କଳାକାର ମାନଙ୍କୁ ଭତ୍ତା ଆଦିର ବନ୍ଦୋବସ୍ତ କରାଯାଉ ।

## ଭାଷାଗତ ରାଷ୍ଟ୍ର

ସଂଯୁକ୍ତ ମହାରାଷ୍ଟ୍ର ଓ ମହାଗୁଜରାଟ ଗଠନ ପାଇଁ ମହାରାଷ୍ଟ୍ର ଓ ଗୁଜୁରାଟ ଜନତାର ସଂଗ୍ରାମକୁ କମ୍ୟୁନିଷ୍ଟପାର୍ଟି ସମର୍ଥନ କରୁଛି । ଅନ୍ୟାନ୍ୟ ରାଜ୍ୟର କେତେକ ଅଞ୍ଚଳ ନେଇ ଯେଉଁ ସବୁ ବିବାଦ ରହିଛି ସେଗୁଡ଼ିକର ସମାଧାନ ସମ୍ପୃକ୍ତ ରାଜ୍ୟ ସରକାର ଭିତରେ ଆପୋଷ ଆଲୋଚନା ଦ୍ୱାରା ହେବା ଉଚିତ ବୋଲି ପାର୍ଟି ମନେକରେ ।

## ତପସିଲ ଓ ଆଦିବାସୀ ସଂପ୍ରଦାୟ

ତପସିଲ ଜାତି ଓ ଆଦିବାସୀ ସମ୍ପ୍ରଦାୟର ଜନସାଧାରଣଙ୍କ ଅବସ୍ଥାର ଉନ୍ନତି ନିମନ୍ତେ ବିଭିନ୍ନ ସାମାଜିକ,ଅର୍ଥନୈତିକ ଓ ରାଜନୈତିକ କାର୍ଯ୍ୟକ୍ରମ ପାଇଁ କମ୍ୟୁନିଷ୍ଟ ପାର୍ଟି ସଂଗ୍ରାମ କରିବ ।

ସମ୍ବିଧାନରେ ଏମାନଙ୍କୁ ଦିଆଯାଇଥିବା ସୁଯୋଗ ଓ ପ୍ରତିଶ୍ରୁତି ସବୁକୁ କାର୍ଯ୍ୟକାରୀ କରିବା ପାଇଁ କମ୍ୟୁନିଷ୍ଟ ପାର୍ଟି ଦାବୀ କରିବ । ସମ୍ବିଧାନରେ ଏଗୁଡ଼ିକର କାର୍ଯ୍ୟକାଳ ଆହୁରି ବଢ଼ାଇ ଦିଆଯିବା ଉଚିତ ।

ଅସ୍ପୃଶ୍ୟତା ବିରୁଦ୍ଧରେ ଆଇନକୁ ପ୍ରୟୋଗ କରିବାର ବାସ୍ତବ ଓ କାର୍ଯ୍ୟକାରୀ କର୍ମସୂଚୀ ପାର୍ଟି ଦାବୀ କରିବ ।

ଆଦିବାସୀ ଓ ତଫସିଲ ଶ୍ରେଣୀର ଉନ୍ନତି ପାଇଁ ଯୋଜନାରେ ହୋଇଥିବା ଖର୍ଚ୍ଚରୁ ଅଧିକ ବ୍ୟବସ୍ଥା ହେବା ଉଚିତ । ଅନ୍ୟାନ୍ୟ ଯୋଜନା କାର୍ଯ୍ୟକାରୀ ହେବା ସାଙ୍ଗରେ ସେଗୁଡ଼ିକ ସିଧା ସଳଖ ଭାବେ ଜଡ଼ିତ ଓ ଯୁକ୍ତ ହେବା ଉଚିତ ।

ବ୍ୟାପକଭାବେ ଆଦିବାସୀ ଥିବା ଅଂଚଳକୁ ଆଂଚଳିକ ସ୍ୱାୟତ୍ତ ଶାସନ ଦେବାପାଇଁ ସମ୍ବିଧାନର ଷଷ୍ଠ ଧାରାର ଆବଶ୍ୟକୀୟ ସଂଶୋଧନ ପ୍ରୟୋଜନୀୟ । କାରଣ ଏହାଦ୍ୱାରା ଏହି ଅଞ୍ଚଳ ଗୁଡ଼ିକ ଗଣତାନ୍ତ୍ରିକ ଭାବେ ହୋଇ ପାରିବେ ।

ନାଗାଞ୍ଚଳରେ ସାମରିକ ଅଭିଯାନ ବନ୍ଦ ରହିବା ଉଚିତ ଓ ସେ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଉଦ୍ୟମ ହେବା ଉଚିତ ।

## ନାରୀ ସମାଜର ଉନ୍ନତି

ବହୁ ଶତାବ୍ଦୀ ଧରି ଆମ ଦେଶରେ ନାରୀସମାଜକୁ ସମାଜରେ ଏକ ନିମ୍ନ ଆସନ ଦିଆ ହୋଇଆସିଛି ଓ ଫଳରେ ଏମାନଙ୍କୁ ଅସଂଖ୍ୟ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଛି । ଏଦିଗରେ କେତେକ ଆଇନ ପ୍ରଣୟନ କରିବା ସତ୍ତ୍ୱେ କାର୍ଯ୍ୟତଃ ଏହିସବୁ ନିର୍ଯ୍ୟାତନା ଅନେକ ପରିମାଣରେ ଏବେ ମଧ୍ୟ ରହିଛି ଏବଂ ନାରୀମାନେ ସମାଜରେ ସେମାନଙ୍କର ନ୍ୟାଯ୍ୟ ଭୂମିକା ଗ୍ରହଣ କରିବାରୁ ବଞ୍ଚିତ ହେଉଛନ୍ତି ।

କମ୍ୟୁନିଷ୍ଟ ପାର୍ଟି ଧାରାବାହିକ ଭାବରେ ନାରୀ ସମାଜର ସ୍ୱାର୍ଥପାଇଁ ଲଢ଼ି ଆସିଛି ଏବଂ ଆଜି ମଧ୍ୟ ପାର୍ଟିର ଦାବୀ ହେଉଛି, ପ୍ରତ୍ୟେକ କ୍ଷେତ୍ରରେ ନାରୀମାନଙ୍କର ସମାନ ଅଧିକାର ରହୁ । ଏହି ଅଧିକାରକୁ କାର୍ଯ୍ୟକାରୀ କରିବାକୁ ହେଲେ ଅର୍ଥନୈତିକ, ସାମାଜିକ ତଥା ଶିକ୍ଷା ଦିଗରେ ନାରୀମାନଙ୍କ ଅବସ୍ଥାର ଉନ୍ନତି, ପ୍ରୟୋଜନ । ଏହାକୁ ଆଖି ଆଗରେ ରଖି ବିଭିନ୍ନ ମତ ଓ କାର୍ଯ୍ୟ-ପନ୍ଥା ଗ୍ରହଣ କରିବା ପାଇଁ ପାର୍ଟି ଦାବୀ କରୁଛି ।

ପାର୍ଟିର ଦାବୀ ହେଉଛି, ସମାନ କାମ ପାଇଁ ସମାନ ବେତନ ମିଳୁ । ବିବାହିତା ନାରୀମାନଙ୍କର ନିଯୁକ୍ତି ଉପରେ ସମସ୍ତ ପ୍ରକାର କଟକଣା ଉଠାଇ ଦିଆଯାଉ, ସମ୍ପତ୍ତି ଉତ୍ତରାଧିକାରରେ ନାରୀ ମାନଙ୍କର ସମାନ ଅଂଶ ରହୁ । ପ୍ରସୂତି ନାରୀ ମାନଙ୍କୁ ଛୁଟି ଓ ସ୍ୱତନ୍ତ୍ର ସୁବିଧା ମିଳୁ । ସମାଜ ମଙ୍ଗଳ ଯୋଜନାରେ ନାରୀମାନଙ୍କର ସାଂସ୍କୃତିକ ଓ ଅର୍ଥନୈତିକ ଉନ୍ନତି ପାଇଁ ଉଲ୍ଲେଖଯୋଗ୍ୟ ବ୍ୟବସ୍ଥା ରହୁ ।

## ସଂଖ୍ୟାଲଘୁ

ଜାତୀୟ ଏକତାକୁ ସୁଦୃଢ଼ କରିବାକୁ ହେଲେ ସଂଖ୍ୟାଲଘୁ ମାନଙ୍କର ଧର୍ମ ବା ଭାଷା ସଂପର୍କୀୟ ନ୍ୟାୟପୂର୍ଣ୍ଣ ଦାବୀ ଗୁଡ଼ିକ ପ୍ରତି ସମସ୍ତ ଦୃଷ୍ଟି ଦେବାକୁ ହେବ । ସେମାନଙ୍କର ଅଧିକାର ସୁରକ୍ଷିତ କରିବାକୁ ହେବ । ସଂଖ୍ୟାଲଘୁ ମାନଙ୍କର ବିରୋଧରେ କୌଣସି ପ୍ରକାର ବିରୋଧୀ ବା ଉତ୍ତେଜନା ମୂଳକ ପ୍ରଚାରକୁ କଠୋର ଭାବେ ଶାସ୍ତି ବିଧାନ କରିବାକୁ ହେବ । ସଂଖ୍ୟା ଲଘୁମାନଙ୍କ ବିରୋଧରେ କୌଣସି ପ୍ରକାର ପକ୍ଷପାତଭାବ ଯାହା କି ବିଭିନ୍ନ ଆକାରରେ ଏବେ ମଧ୍ୟ ଦେଖାଯାଏ, ସେସବୁକୁ ପୂରା ପୂରି ବନ୍ଦ କରିବାକୁ

ପଡ଼ିବ । ଯେ କୌଣସି ଧର୍ମ ବା ଧର୍ମପ୍ରଚାରକଙ୍କୁ ନିନ୍ଦାକରୁଥିବା ସମସ୍ତ ପ୍ରକାର ପ୍ରକାଶନକୁ ବେଆଇନ କରାଯିବ ।

## ଗଣତନ୍ତ୍ରର ପ୍ରସାର

ଦେଶର ପୁନର୍ନିର୍ମାଣ ପାଇଁ ଏହି କର୍ମସୂଚୀ ଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ କେବଳ ଆଇନ କରିଦେଲେ ବା ଉପରୁ ପାଶ୍ କରି ଆଣିଲେ ଏହି କର୍ମସୂଚୀ ଗୁଡ଼ିକ ଆପେ ଆପେ କାର୍ଯ୍ୟକାରୀ ହୋଇଯିବ ନାହିଁ । ଉପଯୁକ୍ତ ଆଇନ ବା ବିଧାନ ସଙ୍ଗେ ସଙ୍ଗେ ସବୁଠୁ ଅଧିକ ଦରକାର ହେଉଛି, ଜନସାଧାରଣଙ୍କର ସୃଜନଶୀଳ ଶକ୍ତିକୁ ଓ ସେମାନଙ୍କ ଉଦ୍‌ଯୋଗକୁ ଅତି ବ୍ୟାପକ ଭାବରେ ଜାଗ୍ରତ କରାଇବା । ଏହା ଗଣତନ୍ତ୍ରର ଏକ ସର୍ବାଙ୍ଗୀନ ବିକାଶ ଫଳରେ ହିଁ ସମ୍ଭବ ହେବ ।

ଏହାକୁ ବାଦଦେଲେ ଏପରି କି ସର୍ବୋତ୍କୃଷ୍ଟ ଆଇନ ମଧ୍ୟ କାଗଜରେ ହିଁ ରହିଯିବ । ଏହାକୁ ବାଦଦେଲେ ଜନସାଧାରଣଙ୍କ ସହଯୋଗ ଯାହା କି ଜାତୀୟ ଗଠନର ମୂଳକଥା, ସେ ସହଯୋଗ ମିଳିବ ନାହିଁ ।

ତେଣୁ ଗଣତନ୍ତ୍ରର ପ୍ରସାର ଦିଗରେ ଫଳପ୍ରଦ ପଦକ୍ଷେପ ପାଇଁ କମ୍ୟୁନିଷ୍ଟ ପାର୍ଟି ନିମ୍ନ ପ୍ରସ୍ତାବଗୁଡ଼ିକ ଦେଉଛି ।

ଭାରତୀୟ ସମ୍ବିଧାନରେ ସରକାରୀ ନୀତି ସମ୍ପର୍କରେ ଯେଉଁ ସବୁ ନିର୍ଦ୍ଦେଶ ରହିଛି, ସେଗୁଡ଼ିକୁ ଶୀଘ୍ର କାର୍ଯ୍ୟକାରୀ କରାଯିବା ଉଚିତ । ଏଗୁଡ଼ିକ ମୌଳିକ ନାଗରିକ ଅଧିକାରର ଅଂଶ ବିଶେଷ ରୂପେ ଗଣ୍ୟ ହେଉ ।

ବ୍ୟବସ୍ଥାସଭାର ଅପର ହାଉସକୁ ପୂରାପୂରି ଉଠାଇ ଦିଆଯାଉ ।

ରାଜ୍ୟ ସରକାରଙ୍କ ହାତରେ ବିଭିନ୍ନ କ୍ଷେତ୍ରରେ ବିଶେଷ କରି ଆର୍ଥିକ କ୍ଷେତ୍ରରେ ଅଧିକ କ୍ଷମତା ଦିଆଯାଉ । ବିଚାର ବିଭାଗକୁ ଶାସନ ବିଭାଗଠାରୁ ସମ୍ପୂର୍ଣ୍ଣରୂପେ ଅଲଗା ରଖାଯିବା ଉଚିତ ।

ଆନୁପାତିକ ପ୍ରତିନିଧିତ୍ୱର ପଦ୍ଧତି ସବୁ ନିର୍ବାଚନରେ ଅନୁସରଣ କରାଯିବା ଉଚିତ ।

ଗ୍ରାମପଞ୍ଚାୟତଠାରୁ ଆରମ୍ଭ କରି ସମସ୍ତ ନିର୍ବାଚନରେ ଗୋପନ ଭାବରେ ଭୋଟ ଗ୍ରହଣର ବ୍ୟବସ୍ଥା ହେବା ଉଚିତ ।

ନିର୍ବାଚିତ ହୋଇଥିବା ଯେଉଁ ସଭ୍ୟମାନଙ୍କୁ ଜନସାଧାରଣ ଅଯୋଗ୍ୟ ବୋଲି ବିଚାର କରିବେ ସେମାନଙ୍କୁ ପ୍ରତିନିଧି ପଦରୁ ପୁଣି ଫେରାଇ ଆଣିବାର ଅଧିକାର ଜନସାଧାରଣଙ୍କର ରହିବ ।

ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନସାଧାରଣଙ୍କ ନାଗରିକ ସ୍ୱାଧୀନତା ଉପରେ ଯଥେଚ୍ଛାଚାର ଆକ୍ରମଣ କରିବାର ଅଧିକାର କୌଣସି ସରକାରର ରହି ନ ପାରେ । ପୋଲିସ ବା ଅମଲାତନ୍ତ୍ର ହାତରେ ମଧ୍ୟ ନିରଙ୍କୁଶ, ବ୍ୟାପକ କ୍ଷମତା ରହି ନପାରେ । ତେଣୁ ଏହିପ୍ରକାର ଅଗଣତାନ୍ତ୍ରିକ କ୍ଷମତା ବା ଅଧିକାରକୁ ପୂରାପୂରି ସଙ୍କୁଚିତ କରି ଦିଆଯିବା ଉଚିତ ।

ଅଟକବନ୍ଦୀ ଆଇନକୁ ସମ୍ପୂର୍ଣ୍ଣ ରଦ୍ଦ କରାଯିବା ଉଚିତ । ଯେପରିକି ଭବିଷ୍ୟତରେ ମଧ୍ୟ ଏହି ପ୍ରକାର କୌଣସି ଆଇନ ପ୍ରଣୟନ ନ ହେବ, ସେଥିପାଇଁ ଭାରତୀୟ ସମ୍ବିଧାନର ୨୨ ଧାରାକୁ ସଂଶୋଧନ କରାଯାଉ ।

ସରକାରଙ୍କୁ ସଭା, ଶୋଭାଯାତ୍ରା ଓ ବିକ୍ଷୋଭ ଆଦିକୁ ମନଇଚ୍ଛା ବେଆଇନ ଘୋଷଣା କରିବାର ଅଧିକାର ଦିଆଯାଇ ଯେଉଁସବୁ ଆଇନକାନୁନ ହୋଇଛି, ସେଗୁଡ଼ିକୁ ସଙ୍ଗେ ସଙ୍ଗେ ରଦ୍ଦ କରାଯିବା ଉଚିତ ।

ଗୁଳି ବା ଲାଠି ଚଳାଇବା ପାଇଁ ପୋଲିସ ହାତରେ ଯେଉଁ ପ୍ରକାର କ୍ଷମତା ରହିଛି, ସେଗୁଡ଼ିକ ସଙ୍କୁଚିତ କରି ପୋଲିସ କୋର୍ଡ଼କୁ ନୂଆଭାବେ ପରିବର୍ତ୍ତିତ କରାଯାଉ ।

ଗୁଳି ଚାଳିଥିବା ପ୍ରତ୍ୟେକ ଘଟଣାରେ ବିଚାର ବିଭାଗୀୟ ତଦନ୍ତ ହେବା ଉଚିତ ଓ କ୍ଷମତାର ଅପବ୍ୟବହାରରେ ଅପରାଧୀ କର୍ମଚାରୀମାନଙ୍କୁ ଦୃଷ୍ଟାନ୍ତମୂଳକ ଉଚିତ ଶାସ୍ତିବିଧାନ ହେବା ଉଚିତ ।

ଏକ ସୁସ୍ଥ ସାଧାରଣ ଜୀବନର ଅଭିବୃଦ୍ଧି ପାଇଁ ବର୍ତ୍ତମାନ ସମ୍ବାଦପତ୍ର ଉପରେ କେତେକ ମୁଷ୍ଟିମେୟ ଲୋକଙ୍କର ଯେଉଁ ଏକଚାଟିଆ କର୍ତ୍ତୃତ୍ୱ ଅଛି, ତାହା ଲୋପ ପାଇବା ଉଚିତ ।

ଏହି ଏକଚାଟିଆ କର୍ତ୍ତୃତ୍ୱକୁ କ୍ଷୁଣ୍ଣ କରିବା ପାଇଁ ଭାରତୀୟ ପ୍ରେସ କମିଶନର ସୁପାରିଶଗୁଡ଼ିକ ଶୀଘ୍ର କାର୍ଯ୍ୟକାରୀ କରାଯାଉ । ଅଲ-ଇଣ୍ଡିଆ ରେଡ଼ିଓରେ ଯେପରି ଦେଶର ଗଣତାନ୍ତ୍ରିକ ମତାମତ ଠିକ୍ ଭାବରେ ପ୍ରତିବିମ୍ବିତ ହୁଏ ସେଥିପ୍ରତି ଦୃଷ୍ଟି ଦିଆଯିବା ଉଚିତ । ଏଥିପାଇଁ ଦେଶର ସମସ୍ତ ସଚ୍ଚୋଟ ଗଣତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକୁ ବେତାର କାର୍ଯ୍ୟକ୍ରମରେ ଭାଗ ନେବାର ସୁବିଧା ଦିଆଯାଉ ।

ଦେଶର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନରେ ଗ୍ରାମପଞ୍ଚାୟତ,ମ୍ୟୁନିସପାଲିଟି ଓ ଜିଲ୍ଲାବୋର୍ଡ଼ ଆଦି ସ୍ୱାୟତ୍ତ-ଶାସନ-ମୂଳକ ଅନୁଷ୍ଠାନଗୁଡ଼ିକର ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଓ ଭୂମିକା ରହିଛି । ଏଥିପାଇଁ ସେମାନଙ୍କ ହାତରେ ଆବଶ୍ୟକୀୟ କ୍ଷମତା ରହିବା ଉଚିତ । ଅମଲାତାନ୍ତ୍ରିକ କଟକଣାରୁ ଏଗୁଡ଼ିକ ମୁକ୍ତ ରହିବା ଉଚିତ । ଆବଶ୍ୟକୀୟ ବ୍ୟୟ ପାଇଁ ଏମାନଙ୍କ ହାତରେ ଯଥେଷ୍ଟ ପରିମାଣରେ ପାଣ୍ଠି ମହଜୁଦ ରହିବା ଦରକାର ।

କର୍ମଚାରୀମାନଙ୍କୁ ନିୟନ୍ତ୍ରଣ କରିବାପାଇଁ ଏବଂ ସେମାନଙ୍କ କାର୍ଯ୍ୟର ତତ୍ତ୍ୱାବଧାନ ପାଇଁ ଏଗୁଡ଼ିକ ହାତରେ ଯଥେଷ୍ଟ କ୍ଷମତା ରହିବା ଆବଶ୍ୟକ । କର୍ମଚାରୀମାନେ ଯେପରି ଜନସାଧାରଣଙ୍କ ଉପରେ ହୁକୁମ ଜାରି ନ କରି ସେମାନଙ୍କର ପ୍ରକୃତ ସେବା କରିପାରିବେ, ଏଥିପାଇଁ ଏହି ଅନୁଷ୍ଠାନ ଗୁଡ଼ିକ ଦୃଷ୍ଟି ଦେବେ ।

ଅଧିକନ୍ତୁ, ଗ୍ରାମଗୋଷ୍ଠୀ ଯୋଜନା, ଜାତୀୟ ସଂପ୍ରସାରଣ ଯୋଜନା ଇତ୍ୟାଦି ସ୍ଥାନୀୟ ଉନ୍ନୟନ କାର୍ଯ୍ୟଗୁଡ଼ିକୁ କାର୍ଯ୍ୟକାରୀ କରିବାର ଭାର ଗ୍ରାମ ପଞ୍ଚାୟତ ଆଦି ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ ସଂସ୍ଥା ହାତରେ ଛାଡ଼ି ଦିଆଯିବା ଉଚିତ ।

— — —

## ୩—ଆମର ନିବେଦନ

ଏପରି ଏକ କାର୍ଯ୍ୟକ୍ରମକୁ ଯଦି ତୁରନ୍ତ ଓ ଫଳପ୍ରଦ ଭାବରେ କାର୍ଯ୍ୟକାରୀ କରାଯାଏ, ତାହାହେଲେ ଦେଶର ଏ ଅନୁନ୍ନତ, ପଛୁଆ ଓ ଦରିଦ୍ର ଅବସ୍ଥା ରହିବ ନାହିଁ । ଆମର ରାଜନୈତିକ ଜୀବନରେ ସଙ୍ଘର୍ଷ ଓ ବିବାଦର ଶେଷ ହୋଇ ଏହା ଦେଶର ସମସ୍ତ ଜନତାକୁ ଏକଜୁଟ କରାଇବ । ଜାତୀୟ ପୁନର୍ଗଠନ ପାଇଁ ଦେଶର ଗୃହଆଡ଼େ ଏହା କର୍ମପ୍ରେରଣା ଓ ଦେଶ ପ୍ରେମର ଏକ ନୂତନ ଜାଗରଣ ଆଣିଦେବ ।

ଏହି କାର୍ଯ୍ୟକ୍ରମକୁ ଗ୍ରହଣ କଲେ ଆମର ଦେଶ ଆନ୍ତର୍ଜାତିକ ରାଜନୀତିରେ ଅଧିକରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଭାଗ ନେବାପାଇଁ ସମର୍ଥ ହେବ । ସାମ୍ୟବାଦର ସଂଗ୍ରାମ ପାଇଁ ଏକ ଅନୁକୂଳ ପରିବେଶ

ସୃଷ୍ଟି କରିବାକୁ ଏହା ସାହାଯ୍ୟ କରିବ । ଆମ ଦେଶର ଜନସାଧାରଣଙ୍କ ଦୃଷ୍ଟିଭଙ୍ଗୀ, ରୁଚି ଓ ବିଶିଷ୍ଟ ଗଣତାନ୍ତ୍ରିକ ଐତିହ୍ୟ ସହିତ ସାମ୍ୟ ରଖି ଆମେ ଯେପରି ଏହି ସାମ୍ୟବାଦର ଲକ୍ଷ୍ୟରେ ଶାନ୍ତିପୂର୍ଣ୍ଣ ଭାବରେ ପହଞ୍ଚି ପାରିବା, ସେଦିଗରେ ଏହା ସାହାଯ୍ୟ କରିବ ।

ଆମ ଦେଶର ସମସ୍ତ ମେହେନତିକାରୀ ଦେଶପ୍ରେମୀ ଜନସାଧାରଣଙ୍କ ସ୍ୱାର୍ଥକୁ ଯଥାର୍ଥଭାବେ ଉପସ୍ଥାପିତ କରି **କମ୍ୟୁନିଷ୍ଟ ପାର୍ଟି** ଏହି କର୍ମସୂଚୀ ପାଇଁ କାର୍ଯ୍ୟ କରିବ । ଏହାକୁ କାର୍ଯ୍ୟକାରୀ କରିବାପାଇଁ ଉପଯୁକ୍ତ ପନ୍ଥା ଓ ମତ ନେବାକୁ ସମସ୍ତ ଗଣତାନ୍ତ୍ରିକ ଶକ୍ତି ଯେପରି ଏକଜୁଟ ହୁଅନ୍ତି, କମ୍ୟୁନିଷ୍ଟ ପାର୍ଟି ସେଥିପାଇଁ ଉଦ୍ୟମ କରିବ ।

ଗତ ଦଶବର୍ଷର କଂଗ୍ରେସ ରାଜୁତି ଉପରେ ନଜର ରାୟ ଦେବାପାଇଁ ଜନସାଧାରଣଙ୍କ ଆଗରେ ଏହି ନିର୍ବାଚନ ଏକ ପ୍ରଧାନ ସୁଯୋଗ । ଦେଶରୁ ଦାରିଦ୍ର୍ୟ, ଅନ୍ୟାୟ, ଶୋଷଣ, ଦମନ ଓ ମନମୁଖୀ ଶାସନକୁ ଲୋପକରି ସର୍ବାଙ୍ଗୀନ ଉନ୍ନତିପାଇଁ ଦେଶ କେଉଁ ମତ ଅନୁସରଣ କରିବା ଉଚିତ, ଏ ସମ୍ପର୍କରେ ଜନସାଧାରଣ ସେମାନଙ୍କର ସ୍ପଷ୍ଟ ମତ ଦେବାପାଇଁ ନିର୍ବାଚନ ଏକ ସୁଯୋଗ ।

ଏହି ନିର୍ବାଚନ ସବୁରେ କମ୍ୟୁନିଷ୍ଟ ପାର୍ଟି ସମସ୍ତ ଗଣତାନ୍ତ୍ରିକ ଦଳ ଓ ବ୍ୟକ୍ତିବିଶେଷଙ୍କ ସହ ମିଳିତ ହେବାକୁ ଚେଷ୍ଟା କରିବ । କାରଣ କମ୍ୟୁନିଷ୍ଟ ପାର୍ଟି ଚାହେଁ ଯେ ଯେଉଁମାନେ ବିଧାନ ସଭାରେ ନିର୍ଭୟରେ ସହ ଜନସ୍ୱାର୍ଥ ପାଇଁ ଲଢ଼ି ପାରୁଥିବେ, ସେହିପରି ଲୋକ ଅଧିକ ସଂଖ୍ୟାରେ ନିର୍ବାଚିତ ହୁଅନ୍ତୁ ।

ଯେଉଁସବୁ ପ୍ରଦେଶରେ ଗଣତାନ୍ତ୍ରିକ ଆନ୍ଦୋଳନ ଖୁବ୍ ଶକ୍ତିଶାଳୀ, ସେସବୁ ସ୍ଥାନରେ ଅନ୍ୟାନ୍ୟ ଗଣତାନ୍ତ୍ରିକ ଶକ୍ତିସହ ମିଳିତ ହୋଇ ସରକାର ପ୍ରତିଷ୍ଠାପାଇଁ କମ୍ୟୁନିଷ୍ଟ ପାର୍ଟି ଉଦ୍ୟମ କରିବ । ଏହି ମିଳିତ ଗଣତାନ୍ତ୍ରିକ ସରକାର ଏକ ମିଳିତ କର୍ମସୂଚୀ ଉପରେ ନିଜର ସମସ୍ତ ଶକ୍ତି ଦେଇ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ କାର୍ଯ୍ୟ କରିବ ।

ଅନ୍ୟାନ୍ୟ ପ୍ରଦେଶରେ ନିଜର ଆସନ ଓ ଶକ୍ତି ବୃଦ୍ଧି କରିବାପାଇଁ ଏବଂ ବିଧାନ ସଭାରେ ଥିବା ଗଣତାନ୍ତ୍ରିକ ବିରୋଧୀ ଦଳର ଆସନ ବୃଦ୍ଧି କରିବା ପାଇଁ କମ୍ୟୁନିଷ୍ଟ ପାର୍ଟି ଉଦ୍ୟମ କରିବ ।

କଂଗ୍ରେସକୁ ଏକଚ୍ଛତିଆ କ୍ଷମତାର ଆସନରୁ ହଟାଇବାପାଇଁ ଆସନ୍ନ ନିର୍ବାଚନରେ ସମସ୍ତ ପ୍ରକାର ଉଦ୍ୟମ ହେବା ଆବଶ୍ୟକ । କାରଣ କେବଳ ଏହି ପ୍ରକାର ଏକ ଆସନରେ ଥିବାରୁ କଂଗ୍ରେସ ଅତି ବେଖାତିର ଭାବରେ ନିଜର ପ୍ରତିଶ୍ରୁତିକୁ ଭାଙ୍ଗୁଛି, ଜନସ୍ୱାର୍ଥକୁ ବିଶ୍ୱାସଘାତକତା କରୁଛି । ଜନମତକୁ ବେଖାତିର କରି ରାଜନୈତିକ ଜୀବନକୁ କଳୁଷିତ କରୁଛି ।

ନିଜର ଅଭିଜ୍ଞତାରୁ ଲୋକେ ଆଜ ବୁଝି ସାରିଲେଣି ଯେ, ଏକ ଶକ୍ତିଶାଳୀ ବିରୋଧୀ ଦଳର ପ୍ରୟୋଜନୀୟତା ଆଜ କେତେ ଅଧିକ । ଯେଉଁ ସଚ୍ଚୋଟ କଂଗ୍ରେସ କର୍ମୀଙ୍କ ମତାମତ ବା ବିଗୁର ପ୍ରତି କଂଗ୍ରେସର ଉପର ମହଲ ସମ୍ମାନ କରିବା ଦୂରେ ଥାଉ କୌଣସି ଧ୍ୟାନ ମଧ୍ୟ ଦେଇ ନାହିଁ—ସେମାନେ ମନେମନେ ଚାହୁଁଛନ୍ତି ଯେ, ବିରୋଧୀ ଦଳ ବେଶୀ ସଂଖ୍ୟକ ସ୍ଥାନରେ ଜୟଲାଭ କରୁ । ସେମାନେ ଜାଣନ୍ତି ଯେ କଂଗ୍ରେସ ଭିତରେ ସେମାନଙ୍କର ସଂଗ୍ରାମକୁ ଏହା ସାହାଯ୍ୟ କରିବ । ସେମାନେ ଜାଣନ୍ତି, ଏହାଦ୍ୱାରା କଂଗ୍ରେସରେ

ସେମାନଙ୍କର ଆସନ ଶକ୍ତିଶାଳୀ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ମତାମତର ଗୁରୁତ୍ୱ ବଢ଼ିଯିବ ।

ବିଧାନସଭାରେ ଏକ ଶକ୍ତିଶାଳୀ ଗଣତାନ୍ତ୍ରିକ ଦଳ ଗଠିତ ହୋଇପାରିଲେ ତାହା ଜନସାଧାରଣଙ୍କ ସ୍ୱାଧୀନତା ଓ ଅଧିକାର ପାଇଁ ଲଢ଼େଇକୁ ଯଥେଷ୍ଟ ସାହାଯ୍ୟ କରିବ । ଜନସ୍ୱାର୍ଥର ଅନୁକୂଳ ମତ ଓ କାର୍ଯ୍ୟ ପନ୍ଥାପାଇଁ ଯେଉଁ ସଂଗ୍ରାମ ଚାଲିଛି ତାହା ଆହୁରି ଶକ୍ତିଶାଳୀ ହେବ । ଆମର ରାଜନୈତିକ ଓ ଅର୍ଥନୈତିକ ଜୀବନରେ ଗଣତାନ୍ତ୍ରିକ ଓ ସମାଜବାଦୀ ଶକ୍ତିକୁ ଏହା ଆହୁରି ଦୃଢ଼ କରିବ ।

ଯଦି ଦେଶର ସମସ୍ତ ବାମପନ୍ଥୀ ଦଳ ପ୍ରଗତିଶୀଳ ବ୍ୟକ୍ତି-ବିଶେଷମାନେ ଏକ ସମ୍ମିଳିତ ସାମ୍ମୁଖ୍ୟ ତଳେ ଏକତ୍ରିତ ହୋଇ ପାରନ୍ତି, ତାହାହେଲେ ଯାଇ ଏକଥା ସମ୍ଭବ ହୋଇପାରିବ । ଗତ ସାଧାରଣ ନିର୍ବାଚନରେ ଓ ଅନେକ ଉପ ନିର୍ବାଚନରେ ଏହା ପ୍ରମାଣିତ ହୋଇଅଛି ।

ସୁତରାଂ ନିଜ ଶକ୍ତିଭିତରେ ଯେତେଦୂର କରିଯାଇପାରେ କମ୍ୟୁନିଷ୍ଟ ପାର୍ଟି ଆସନ୍ତା ନିର୍ବାଚନରେ ସମସ୍ତ ବାମପନ୍ଥୀ ଓ ଗଣ-ତାନ୍ତ୍ରିକ ଦଳକୁ ଏକତ୍ରିତ କରିବାପାଇଁ ଆପ୍ରାଣ ଉଦ୍ୟମ କରିବ । କେତେକ ରାଜ୍ୟରେ ଏ ଦିଗରେ ତାତ୍ପର୍ଯ୍ୟପୂର୍ଣ୍ଣ ସଫଳତା ହାସଲ ହୋଇ ପାରିଲାଣି । ଏହି ସଫଳତା ଗୁଡ଼ିକ ଏକତା ପାଇଁ ଆମ ଉଦ୍ୟମକୁ ଆହୁରି ଜୋରଦାର କରିବା ପାଇଁ ପାର୍ଟିକୁ ପ୍ରେରଣା ଯୋଗାଇବ ।

ଯେଉଁ ଅଞ୍ଚଳରେ ଆଶାନୁରୂପ ଗଣଭିତ୍ତି ଅଛି, ସେସବୁ ସ୍ଥାନରେ କମ୍ୟୁନିଷ୍ଟ ପାର୍ଟି ନିଜ ପ୍ରାର୍ଥୀ ଠିଆ କରାଇବ ।

କେବଳ କର୍ମସୂଚୀ ଉପରେ ନୁହେଁ, ଦେଶପାଇଁ ଆମେ ଏପର୍ଯ୍ୟନ୍ତ ଯାହା କରିଛୁ ଓ ଜନସାଧାରଣଙ୍କ ସ୍ୱାର୍ଥପାଇଁ ଆମେ ଯେଉଁଭଳି ସବୁ ସଂଗ୍ରାମ କରିଛୁ ତାକୁଇ ଭିତ୍ତିକରି ଜନସାଧାରଣ ଆମକୁ ସମର୍ଥନ କରନ୍ତୁ ବୋଲି ଆହ୍ୱାନ ଜଣାଉଛୁ ।

ଜନ୍ମହେବା ଦିନଠାରୁ ଆଜଯାଏଁ ଭାରତୀୟ ଶ୍ରମିକ ଶ୍ରେଣୀର ପାର୍ଟି କମ୍ୟୁନିଷ୍ଟ ପାର୍ଟି ମେହେନତି ଜନତାର ସ୍ୱାର୍ଥପାଇଁ, ଗଣତନ୍ତ୍ର ଓ ସ୍ୱାଧୀନତା ପାଇଁ ନିର୍ଭୟ ଅବିଚଳ ଭାବରେ ଲଢ଼ି ଆସିଛି । କମ୍ୟୁନିଷ୍ଟ ପାର୍ଟି ହିଁ ଭାରତରେ ପ୍ରଥମକରି ସାମ୍ୟବାଦୀ ନିଶାଣ ଉଡ଼ାଇଛି । କମ୍ୟୁନିଷ୍ଟ ପାର୍ଟି ହିଁ ଭାରତର ଶ୍ରମିକ ଓ କୃଷକ ଶ୍ରେଣୀର ଆନ୍ଦୋଳନର ମୂଳଦୁଆ ପକାଇଛି ଏବଂ ଶ୍ରମିକ ଓ ଚାଷୀ ଶ୍ରେଣୀର ପ୍ରଥମ ବଡ଼ ବଡ଼ ଆନ୍ଦୋଳନ ଗୁଡ଼ିକୁ ନେତୃତ୍ୱ ଦେଇଛି । ଶୋଷିତ ଶ୍ରେଣୀ ମନରେ କମ୍ୟୁନିଷ୍ଟ ପାର୍ଟି ହିଁ ପ୍ରଥମକରି ଏହି ଚେତନା ଆଣି ଦେଇଛି ଯେ ନିଜର ଦାବୀ ହାସଲ କରିବାକୁ ହେଲେ ଶୋଷିତ ଶ୍ରେଣୀର ଏକମାତ୍ର ହତିଆର ହେଉଛି ଏକତା ଓ ସଂଗଠନ ।

ଦମନ ଓ ଆତଙ୍କ କମ୍ୟୁନିଷ୍ଟ ପାର୍ଟିକୁ ଭାଙ୍ଗିଦେଇ ପାରି ନାହିଁ । ହଜାର ରକମର କୁତ୍ସାକରି ମଧ୍ୟ ଜନସାଧାରଣଙ୍କଠାରୁ କମ୍ୟୁନିଷ୍ଟ ପାର୍ଟିକୁ କେହି ବିଚ୍ଛିନ୍ନ କରିପାରି ନାହିଁ । ବହୁ ପ୍ରକାର ଅସୁବିଧା ଭିତର ଦେଇ ଗତିକଲେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ଦିନକୁ ଦିନ ଆହୁରି ଶକ୍ତିଶାଳୀ ହେଉଛି । କାରଣ, ଏହାର ମୂଳ ଜନସାଧାରଣଙ୍କ ଭିତରେ ଓ ତାଙ୍କରି ଭିତରୁ ଏହା ଶକ୍ତି ସଂଗ୍ରହ କରେ ।

ଏଇ କେତେବର୍ଷ ଭିତରେ ଶାନ୍ତି ଓ ଏସିଆର ଏକତାପାଇଁ ଭାଷାଭିତ୍ତିରେ ପ୍ରଦେଶ ଗଠନ ପାଇଁ, ଭାରତରୁ ଫରାସୀ ଓ ପର୍ତ୍ତୁଗୀଜ ଦଖଲକୁ ଲୋପ କରିବାକୁ ଯେଉଁସବୁ ବଡ଼ ବଡ଼ ଆନ୍ଦୋଳନ ହୋଇଯାଇଛି, ସବୁଥିରେ କମ୍ୟୁନିଷ୍ଟ ପାର୍ଟି ବରାବର

ଆଗରେ ଛିଡ଼ାହୋଇ ଆସିଛି । ଶ୍ରମିକ, କୃଷକ, କାରିଗର, ଯୁବ, ମଧ୍ୟବିତ୍ତ ଓ ଶିକ୍ଷକମାନଙ୍କର ପ୍ରତ୍ୟେକଟି ଆନ୍ଦୋଳନରେ କମ୍ୟୁନିଷ୍ଟ ପାର୍ଟି ବରାବର ପୁରୋଭାଗରେ ଛିଡ଼ା ହୋଇଆସିଛି । ହଜାର ହଜାର ପାର୍ଟି ସଭ୍ୟଙ୍କୁ ଏହିସବୁ ଆନ୍ଦୋଳନରେ କାରାବରଣ କରିବାକୁ ପଡ଼ିଛି । ଜୀବନକୁ ବଳି ଦେବାକୁ ପଡ଼ିଛି । ତଥାପି କମ୍ୟୁନିଷ୍ଟ ପାର୍ଟି ନିଜ ଲଢ଼େଇରେ ବରାବର ଅଟଳ ରହିଛି ।

ଗତଥର ଆମର ଅନେକ ସଂଖ୍ୟକ ପ୍ରାର୍ଥୀ ଲୋକସଭା ଓ ବ୍ୟବସ୍ଥାସଭାକୁ ନିର୍ବାଚିତ ହୋଇଥିଲେ । ସେମାନେ କଂଗ୍ରେସର ସମସ୍ତ ଜନବିରୋଧୀ ନୀତି ବିରୋଧରେ ବରାବର ଲଢ଼ି ଆସିଛନ୍ତି । ଜନତାର ସ୍ୱାର୍ଥରକ୍ଷା କରିବାପାଇଁ ଏମାନେ ଧାରାବାହିକ ଭାବରେ ଲଢ଼ି ଆସିଛନ୍ତି । ନିଜ ପଛରେ ଜନମତ ଓ ଜନ ଆନ୍ଦୋଳନର ସମର୍ଥନ ପାଇ ଅନେକଗୁଡ଼ିଏ ପ୍ରଶ୍ନ ଉପରେ କଂଗ୍ରେସ ନୀତିକୁ ପରିବର୍ତ୍ତନ କରିବାକୁ ଓ ଜନସାଧାରଣଙ୍କ ଦାବୀ ହାସଲ କରିବାକୁ ଏମାନେ ସକ୍ଷମ ହୋଇ ପାରିଛନ୍ତି ।

ଜନସାଧାରଣଙ୍କ ଉପରେ ଏବଂ ସେମାନଙ୍କ ବିଚାର ଉପରେ ଗଭୀର ବିଶ୍ୱାସ ଓ ଆସ୍ଥାରଖି ଆଜ ଆମେ ନିର୍ବାଚନରେ ଓହ୍ଲାଉଛୁ । ଦେଶର ଯେଉଁ ଜନସାଧାରଣଙ୍କୁ ଆମେ ଏତେଦିନ ଯାଏଁ ସେବାକରି ଆସିଛୁ, ସେମାନେ ଯେ ଆଜ ଆମକୁ ବିପୁଳ ସମର୍ଥନ ଜଣାଇବେ, ଏଥିରେ ଆମର ସନ୍ଦେହ ନାହିଁ । ଆମର ଗଭୀର ବିଶ୍ୱାସ ଯେ, ଜନତାର ରାୟ ଦେଶରେ ଶାନ୍ତି, ସାମ୍ୟବାଦ ଓ ଗଣତନ୍ତ୍ରର ଆସନକୁ ଆହୁରି ଶକ୍ତିଶାଳୀ କରିବ । ଆମେ ବିଶ୍ୱାସ କରୁଛୁ ଯେ ଏକ ସୁଖୀ ଓ ସମୃଦ୍ଧ ଜୀବନପାଇଁ ଆମ ଦେଶବାସୀଙ୍କ ମହାନ୍ ଆନ୍ଦୋଳନ ଶକ୍ତିଶାଳୀ ହୋଇ ନୂଆ ନୂଆ ସାଫଲ୍ୟ ଓ ବିଜୟର ପଥରେ ଆଗେଇଯିବ ।

---



ସାଧାରଣ ସ୍ଥାନ ପାଇଁ ପ୍ରାର୍ଥୀମାନଙ୍କର ବାକ୍ସ ଚିହ୍ନ



ହରିଜନ ବା ଅନୁନ୍ନତ ଶ୍ରେଣୀ ପ୍ରାର୍ଥୀମାନଙ୍କର ବାକ୍ସ ଚିହ୍ନ

ଦା-ଶସ୍ୟ କେଣ୍ଡା ଯେଉଁଠି
ଭୋଟ ଦେବେ ସେଇଠି

ମୁଦ୍ରକ
ପ୍ରଭାତ ପ୍ରେସ, କଟକ

ମୂଲ୍ୟ ଚାରିଅଣା